

# ଭକ୍ତ ବାଲିଗାଁ ଦାସଃ
## ଜୀବନୀ ଓ ରଚନା

# ଭକ୍ତ ବାଲିଗାଁ ଦାସ

## (ଜୀବନୀ ଓ ରଚନା)

ଶ୍ରୀ ନୀଲମଣି ମିଶ୍ର
କ୍ୟୁରେଟର୍, ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

ଗ୍ରନ୍ଥମନ୍ଦିର

[ This book has been printed in paper made available by the Government of India at concessional rate. ]

ପ୍ରକାଶକ :
ଶ୍ରୀ ଅଭିରାମ ମହାପାତ୍ର
ଗ୍ରନ୍ଥ ମନ୍ଦିର
କଟକ-୨ : ବ୍ରହ୍ମପୁର-୧

ମୁଦ୍ରାକର :
ଶ୍ରୀ ଜୟରାମ ମହାପାତ୍ର
ଗ୍ରନ୍ଥ ପ୍ରକାଶିନୀ
କଟକ-୧

ପ୍ରଥମ ମୁଦ୍ରଣ :
ନଭେମ୍ବର, ୧୯୭୮
ପୁନର୍ମୁଦ୍ରଣ : ୧୯୮୧

ମୂଲ୍ୟ : ଟ ୧୦.୦୦

# ଭୂମିକା

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅପାର କରୁଣା ଲଭକରି ଓଡ଼ିଶାର ବହୁ ସନ୍ଥକବି ସାଧୁମଣ୍ଡଳୀରେ ପ୍ରସିଦ୍ଧି ଅର୍ଜନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭକ୍ତକବିମଣ୍ଡଳୀରେ ସ୍ଥାନ ଅଧିକାର କରିଥିଲେ । ଏହି ଭକ୍ତକବିମାନଙ୍କ ମଧ୍ୟରେ ପଞ୍ଚସଖା ଓଡ଼ିଶାର ପୁରପଲ୍ଲୀରେ ସୁଖ୍ୟାତ ହୋଇଥିଲେ । ସେମାନଙ୍କ ପଦାଙ୍କ ଅନୁସରଣ କରି ଅନ୍ୟାନ୍ୟ ବହୁ କବି ମୂଲ୍ୟବାନ୍ କବିତା, ଭଜନ ଆଦି ରଚନା କରିଥିଲେ ହେଁ ଓଡ଼ିଶାର ସୁଧୀବୃନ୍ଦ ତଥା ସାଧାରଣ ପାଠକଙ୍କ ନିକଟରେ ସେପରି ସୁପରିଚିତ ନୁହନ୍ତି । ସାଲବେଗ ନାମକ ଯବନକବିଙ୍କର ପାଞ୍ଚ ସାତଟି ମାତ୍ର ଭଜନ ଓଡ଼ିଶାର ଗାୟକମାନଙ୍କଦ୍ୱାରା ଗୀତହେଉଥିଲା; ମାତ୍ର ଅନୁସନ୍ଧାନରୁ ତାଙ୍କର ଏକଶହ ଏଗାରଟି ପଦ୍ୟ ଥିବାର ଜଣାପଡ଼ିଲା । ସେହିପରି ଭକ୍ତକବି ଦାସିଆ 'ବାଲିଗାଁ ଦାସ' ନାମରେ ଲୋକମୁଖରେ ପରିଚିତ ଥିଲେ ମଧ୍ୟ ତାଙ୍କ କୃତ ଦୁଇଟି ଗ୍ରନ୍ଥ ସମ୍ବନ୍ଧରେ ଓଡ଼ିଶାର ଅଗଣିତ ପାଠକ ଅପରିଚିତ ଥିଲେ ଏବଂ ତାଙ୍କ ସମୟ ଓ ଗୁରୁପରମ୍ପରା ଆଦି ବହୁ ବିଷୟରେ ମଧ୍ୟ ଓଡ଼ିଶାର ଆଲୋଚକମାନେ ସଚେତନ ନଥିଲେ ।

ଭକ୍ତ ବାଲିଗାଁ ଦାସଙ୍କ ସମ୍ବନ୍ଧରେ ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି ଖଣ୍ଡିଏ ପୁସ୍ତକ ଅନେକ ଦିନ ତଳେ ପ୍ରକାଶ କରିବାର ଶୁଣିଛୁ, ମାତ୍ର ପୁସ୍ତକଟିକୁ ଦେଖିବାର ସୌଭାଗ୍ୟ ଲଭକରିନାହିଁ । 'ଭକ୍ତକବି ସାଲବେଗ' ଶୀର୍ଷକ ପୁସ୍ତକଟି ଓଡ଼ିଆ ପାଠକ-ମହଲରେ ଆଦୃତ ହେବା ପରେ, 'ଭକ୍ତ ବାଲିଗାଁ ଦାସ'ଙ୍କ ସମ୍ବନ୍ଧରେ ଖଣ୍ଡିଏ ପୁସ୍ତକ ରଚନା କରିବାର ଅଭିଳାଷ ଆଜକୁ ପ୍ରାୟ ଏକବର୍ଷ ତଳେ ମୋ ମନରେ ଜାତହେଲା । ଏ ସମ୍ବନ୍ଧରେ 'ବାଲିଗାଁ ଭକ୍ତ ଦାସ କମିଟି'ର ସମ୍ପାଦକ ଶ୍ରୀଯୁକ୍ତ କେଳୁଚରଣ ଦାସ ବାରମ୍ବାର ମୋତେ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ପୁସ୍ତକଟି ଶୀଘ୍ର ଶେଷକରିବା ଲାଗି ଅନୁରୋଧ କରିଥିଲେ । ତାଙ୍କର ଉତ୍ସାହ ତଥା ଆଗ୍ରହ ମୋତେ ଅତ୍ୟନ୍ତ ଉତ୍ସାହିତ କରାଇଲା । ତେଣୁ ମୁଁ ଭକ୍ତ ଦାସିଆଙ୍କ ସମ୍ବନ୍ଧରେ ଆବଶ୍ୟକୀୟ ତଥ୍ୟ ସଂଗ୍ରହ କରି ପୁସ୍ତକର ପାଣ୍ଡୁଲିପି ଶୀଘ୍ର ପ୍ରସ୍ତୁତ କରିବାରେ ଲାଗିପଡ଼ିଲି । ଶ୍ରୀଯୁକ୍ତ କେଳୁଚରଣବାବୁ ମଧ୍ୟ ବାଲିଗାଁ ଦାସଙ୍କ ସମ୍ବନ୍ଧରେ ଅନେକ ତଥ୍ୟ ମୋତେ ଯୋଗାଇଦେଇ ମୋ କାର୍ଯ୍ୟକୁ ତ୍ୱରାନ୍ୱିତ କରାଇଛନ୍ତି । ତେଣୁ ଶ୍ରୀ ଦାସ ଅଶେଷ ଧନ୍ୟବାଦର ପାତ୍ର ।

ପୁସ୍ତକର ପାଣ୍ଡୁଲିପିଟି ଦେଖି 'ଗ୍ରନ୍ଥମନ୍ଦିର'ର ପରିଚାଳକ ଶ୍ରୀଯୁକ୍ତ ଅଭିରାମ ମହାପାତ୍ର ପ୍ରକାଶନର ଦାୟିତ୍ୱ ବହନକରିବାକୁ ଯେଉଁ ସାଗ୍ରହ ପ୍ରତିଶ୍ରୁତି ଦେଲେ ତାହା ମୋତେ ଆହୁରି ଅଧିକ ଉତ୍ସାହ ପ୍ରଦାନକଲା । ତେଣୁ ଆଜି ମୁଁ ଶ୍ରୀ ଅଭିରାମବାବୁଙ୍କଠାରେ କୃତଜ୍ଞତା ଜ୍ଞାପନ କରୁଛି ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଶ୍ରୀମତୀ ମମତା ମିଶ୍ର ପାଣ୍ଡୁଲିପିଟି ଶୀଘ୍ର ପ୍ରସ୍ତୁତକରିବା ଦିଗରେ ମୋତେ ଆନ୍ତରିକ ସାହାଯ୍ୟ କଲେ ଏବଂ ବନ୍ଧୁ ଶ୍ରୀ ଭଗବାନ ପଣ୍ଡା, ଶ୍ରୀ ଦୀନନାଥ ପାଠୀ ଓ କରୁଣାକର ବିଶୋଇ ପ୍ରଭୃତି ପାଣ୍ଡୁଲିପିଟିକୁ ଶୀଘ୍ର ଶେଷ କରିବା ଲାଗି ଆବଶ୍ୟକୀୟ ସାହାଯ୍ୟ ପ୍ରଦାନକଲେ । ତେଣୁ ସେମାନେ ଅଶେଷ ଧନ୍ୟବାଦର ପାତ୍ର ।

ବର୍ତ୍ତମାନ ମୁଁ ପୁସ୍ତକଟିକୁ ଓଡ଼ିଶାର ଅଗଣିତ ପାଠକପାଠିକା ଓ ବିଜ୍ଞ ଆଲୋଚକମାନଙ୍କ ହାତରେ ଅର୍ପଣ କରୁଛି । ସେହିମାନେ ହିଁ ପୁସ୍ତକର ପ୍ରକୃତ ନିର୍ଣ୍ଣାୟକ । ପୁସ୍ତକରେ ଥିବା ଭ୍ରମପ୍ରମାଦ ପ୍ରତି ଦୃଷ୍ଟି ନ ଦେଇ, ଭକ୍ତକବି ଦାସିଆଙ୍କ ସମ୍ବନ୍ଧରେ ଆଲୋଚନା ଓ ତାଙ୍କ ରଚନାକୁ ସାଗ୍ରହରେ ପାଠକଲେ, ମୋର ଶ୍ରମ ସାର୍ଥକ ହେବ ।

ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର
ସ୍ନାନପୂର୍ଣ୍ଣିମା
୨୦ ଜୁନ, ୧୯୭୮

ବିନୀତ
ନୀଳମଣି ମିଶ୍ର

# ସୂଚୀପତ୍ର



□□□

# ଶ୍ରୀ ଜଗନ୍ନାଥ ଓ ବାଲିଗାଁ ଦାସ

ଓଡ଼ିଶାର ଭକ୍ତକବିମାନଙ୍କ ଜୀବନୀ ଅଦ୍ୟାପି ବାଧିବଦ୍ଧଭାବରେ ଲେଖାଯାଇନାହିଁ । କିନ୍ତୁ ଓଡ଼ିଶାର ପ୍ରାଚୀନ ପୋଥିପତ୍ରରେ ଅଦ୍ୟାପି ଲୁକ୍‌କାୟିତ ଅବସ୍ଥାରେ ଥିବା ବହୁ ବୈଷ୍ଣବ ପଦାବଳୀ, ଚଉପଦୀ, ଭଜନ ଚଉତିଶା ଆଦିରୁ ଜଣାଯାଏ ଯେ ଏ ଦେଶରେ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀଠାରୁ ଆରମ୍ଭ କରି ଊନବିଂଶ ଶତାବ୍ଦୀ ମଧ୍ୟରେ ବହୁ ଭକ୍ତକବି ଜନ୍ମଗ୍ରହଣ କରି ବିଭିନ୍ନ ଦେବଦେବୀଙ୍କ ସ୍ତୁତି ଓ ଭଜନମୂଳକ ପଦାବଳୀ ଆଦି ରଚନା କରିଛନ୍ତି । ସେମାନଙ୍କ ପଦାବଳୀର ସଂଖ୍ୟା ଲକ୍ଷାଧିକ; କିନ୍ତୁ ଆମ ଦେଶର ଦୁର୍ଭାଗ୍ୟ ଯେ, ଆମେ ସେଗୁଡ଼ିକର ପ୍ରଚାର ଓ ପ୍ରସାର ଲାଗି କୌଣସି ଯତ୍ନ କରିନାହୁଁ । ବିଶେଷତଃ, ଭାରତର ଅନ୍ୟତମ ଧାମ ଶ୍ରୀକ୍ଷେତ୍ରରେ ବିଜେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଗୁଣଗାନ ତଥା ଯାତ୍ରା ଓ ପର୍ବପର୍ବାଣି ବର୍ଣ୍ଣନାକରି ଅନେକ ସ୍ୱତନ୍ତ୍ର କାବ୍ୟ ରଚନା କରାଯାଇଛି । ତଦ୍‌ବ୍ୟତୀତ ବହୁ ଓଡ଼ିଆ ଭକ୍ତକବି ଶ୍ରୀଜଗନ୍ନାଥଙ୍କୁ ଆରାଧନା କରି ସହସ୍ରାଧିକ ଭଜନ ଓ ଚଉପଦୀ ରଚନା କରିଛନ୍ତି ।

ଏହି ଓଡ଼ିଆ ଭକ୍ତମାନଙ୍କର ଏକ ତାଲିକା ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ଋଷିକୁଲ୍ୟା ତଟବାସୀ କବି ଭକ୍ତ ରାମଦାସ ତାଙ୍କ 'ଦାର୍ଢ୍ୟତା ଭକ୍ତି ରସାମୃତ'ରେ ଦେଇଛନ୍ତି । ସେହି ତାଲିକା ମଧ୍ୟରେ କେତେକ ଅତିରଞ୍ଜିତ ବର୍ଣ୍ଣନା ରହିଥିଲେ ମଧ୍ୟ, ସେ ହିଁ ପ୍ରଥମ ବ୍ୟକ୍ତି ଯେ କି ଓଡ଼ିଆ ଭକ୍ତମାନଙ୍କର ଗୋଟିଏ ଜୀବନୀ ପୁସ୍ତକ ରଚନା କରିଛନ୍ତି ।

ଓଡ଼ିଆ ଭକ୍ତମାନଙ୍କ ମଧ୍ୟରେ କାବ୍ୟିକ-ପ୍ରତିଭା-ସମ୍ପନ୍ନ ବାଲିଗାଁ ଦାସ ଅନ୍ୟତମ । ସେ ନିଜର ଭକ୍ତିଭାବନା ବଳରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଅତ୍ୟନ୍ତ ପ୍ରିୟପାତ୍ର ହୋଇ-ପାରିଥିଲେ ।

ରାମଦାସଙ୍କ 'ଦାର୍ଢ୍ୟତାଭକ୍ତି ରସାମୃତ'ରୁ ଜଣାଯାଏ ଯେ, ଭକ୍ତ ବାଲିଗାଁ ଦାସ ବା ଦାସିଆ ବାଉରି ଶ୍ରୀକ୍ଷେତ୍ର ଧାମଠାରୁ ଦୁଇକୋଶ ଦୂର ବାଲିଗାଁରେ ଜନ୍ମଗ୍ରହଣ କରି-ଥିଲେ । ଜାତିରେ ସେ ଖଦାଳ । ଖଦାଳମାନେ ଆଜିକାଲି 'ବାଉରି' ଶ୍ରେଣୀର ଅନ୍ତର୍ଭୁକ୍ତ । ସେମାନେ ମୁଖ୍ୟତଃ କୃଷିଜୀବୀ ଏବଂ ଲୁଗାବୁଣିବା ସେମାନଙ୍କର ଅନ୍ୟତମ ବ୍ୟବସାୟ । ଭକ୍ତ ରାମଦାସ ତାଙ୍କୁ 'ଶବର' ଜାତିରେ ଅନ୍ତର୍ଭୁକ୍ତ କରିଛନ୍ତି ।

"କ୍ଷେତ୍ରକୁ ଛଡ଼ା ବେନି କୋଶ । ବାଲିଗ୍ରାମରେ ତାର ବାସ ॥
ଜାତିରେ ଅଟଇ ଖନ୍ଦାଳ । ନ ଜାଣେ ପାପପୁଣ୍ୟ ଫଳ ॥
ନାମ ତା ଦାସିଆ ବାଉରି । ଶବର ଜାତି ଭୁଲେ ସରି ॥"

(ଦାର୍ଢ୍ୟତା ଭକ୍ତି ରସାମୃତ—ଅଷ୍ଟାବିଂଶ ଅଧ୍ୟାୟ

ଦାସିଆ ସନ୍ତାନବିହୀନ ହୋଇ ପତ୍ନୀ ସହିତ କାଳ ଅତିବାହିତ କରୁଥିଲେ; କିନ୍ତୁ ଆବାଲ୍ୟରୁ ସେ ଥିଲେ ଜଣେ ଭକ୍ତ। ଗ୍ରାମ ମଧ୍ୟରେ ଯେଉଁଠାରେ ପୁରାଣ ପାଠ, ନାମ ସଂକୀର୍ତ୍ତନ କିମ୍ବା ବ୍ରତ ଉତ୍ସବ ପାଳିତ ହୁଏ, ସେଠାରେ ଦାସିଆ ଉପସ୍ଥିତ ରହି ଭକ୍ତିର ସହିତ ଆଲୋଚନାମାନ ଶୁଣନ୍ତି। ଧୀରେ ଧୀରେ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଦାସିଆଙ୍କ ହୃଦୟରେ ଦିବ୍ୟଜ୍ଞାନ ଉଦୟ ହେଲା। ସେ ମାଳା ଓ ତିଳକଧାରୀ ହୋଇ ହରିନାମ ଗାୟନରେ ରତ ହିବେଶି, ନିଜ ଜାତିଗତ ବ୍ୟବସାୟ ଲୁଗାବୁଣାରୁ ଅର୍ଥ ଉପାର୍ଜନକରି, କାଳ ଅତିବାହିତ କଲେ। ସମସ୍ତ ପ୍ରକାର ଦିନଚର୍ଯ୍ୟା ମଧ୍ୟରେ ଭକ୍ତ ଦାସିଆଙ୍କ ହୃଦୟରେ ଜ୍ଞାନପିପାସା ଦିନକୁ ଦିନ ବୃଦ୍ଧି ପାଇଲା। ସେ କିପରି ଆଧ୍ୟାତ୍ମ୍ୟମାର୍ଗରେ କାଳଯାପନକରି ମାନବଜୀବନ ସାର୍ଥକ କରିବେ, ସେଥିଲାଗି ମନେମନେ ଗଭୀର ଭାବରେ ଚିନ୍ତାକରିବାକୁ ଲାଗିଲେ। ଏହିପରି ଭାବରେ ଚିନ୍ତାକରୁଥିବା ସମୟରେ, ଗୁଣ୍ଡିଚାଯାତ୍ରା ଆସି ଉପସ୍ଥିତ ହେଲା। ଦୂରଦୂରାନ୍ତରୁ ଶତସହସ୍ର ଯାତ୍ରୀ ଶ୍ରୀ ଜଗନ୍ନାଥଙ୍କ 'ରଥଯାତ୍ରା' ଦର୍ଶନ ଲାଗି ଜଗନ୍ନାଥ ସଡ଼କରେ ଯାଉଥିବାବେଳେ, ଦାସିଆ ବାଉରିଙ୍କ ମନରେ ଗଭୀର ଆଲୋଡ଼ନ ସୃଷ୍ଟି ହେଲା। ସେ ନିଜ ମନର ଆବେଗକୁ ଚରିତାର୍ଥ କରିବା ଲାଗି ଯାତ୍ରୀମାନଙ୍କ ସହିତ ଶ୍ରୀକ୍ଷେତ୍ର ଚାଲିଗଲେ। ସେଠାରେ ରଥଯାତ୍ରାରେ ନନ୍ଦିଘୋଷବିହାରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଦେଖି ବାଲଗାଁ ଦାସ ଭାବରେ ଭୋଳ ହୋଇଗଲେ। ପ୍ରଭୁଙ୍କର କଳାଶ୍ରୀମୁଖକୁ ଚାହିଁ ତାଙ୍କ ଚକ୍ଷୁରୁ ପ୍ରେମାଶ୍ରୁ ଧାରଧାରହୋଇ ବହିବାରେ ଲାଗିଲା। ସେ ମହାପ୍ରଭୁଙ୍କୁ ନାନାଭାବରେ ଦୁଃଖ ଜଣାଇ ଘରକୁ ଫେରିଗଲେ।

ପ୍ରଥମ ଥର ପୁରୀ ଧାମ ଆସି ଫେରିସିବାପରେ ଗୃହରେ 'ହବିଷ' ଭୋଜନର ବ୍ୟବସ୍ଥା କଲେ। ଏହି ପ୍ରଥା କେଉଁ ଆଦିମକାଳରୁ ପରମ୍ପରାଭାବେ ଚାଲିଆସିଛି। ସେହି ପ୍ରଥାନୁସାରେ ଦାସିଆଙ୍କ ପତ୍ନୀ ସ୍ୱାମୀଙ୍କଲାଗି ନୂଆ ହାଣ୍ଡିରେ ଅରୁଆଚାଉଳ ରାନ୍ଧି ପୂର୍ଣ୍ଣହାଣ୍ଡି ଉପରେ ମେଞ୍ଚାଏ ଶାଗ ଥୋଇ, ସ୍ୱାମୀଙ୍କ ଆଗରେ ପରଷିଦେଲେ। ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦେଖିବା ସମୟରୁ ଭକ୍ତ ଦାସିଆଙ୍କର ଭାବାନ୍ତର ଜାତ ହୋଇଥାଏ। ସେ ପୂର୍ଣ୍ଣହାଣ୍ଡି ଅନ୍ନ ଉପରେ ଶାଗମେଞ୍ଚାକ ଦେଖି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚକାନୟନ ଧ୍ୟାନରେ ଭୋଳ ହୋଇଗଲେ। ତାଙ୍କୁ ଜଣାପଡ଼ିଲା, ସତେ ଯେପରି, ତାଙ୍କର ଭକ୍ତିଭାବରେ ବିମୁଗ୍ଧ ପ୍ରଭୁ ଚକାଡୋଳା ଆଜି ତାଙ୍କର ସମ୍ମୁଖରେ ବିଜେହୋଇଛନ୍ତି। ଧନ୍ୟ ସେ ଭକ୍ତ, ଧନ୍ୟ ତାଙ୍କର ପରିକଳ୍ପନା ! ସେ ସର୍ବତ୍ର ପ୍ରଭୁଙ୍କର ଅସ୍ତିତ୍ୱ ଅନୁଭବ କରନ୍ତି। ସୁରଙ୍ଗ ହାଣ୍ଡିର ଫାନ୍ଦ ଭିତରେ ପୂର୍ଣ୍ଣ ଭାତହାଣ୍ଡିରେ ପେଜସର ବାନ୍ଧିଯାଇଛି। ତା ଉପରେ ଶାଗ ମେଞ୍ଚାକ କଳା ମଚ୍‌ମଚ୍ ଦେଖାଯାଉଛି। ଏହି ଦୃଶ୍ୟ ଦେଖି ଭକ୍ତ ଦାସିଆଙ୍କ ବିହ୍ୱଳପ୍ରାଣ ସ୍ୱରୂପ ଚିନ୍ତାରେ ଉଦ୍‌ବେଳ ହୋଇଉଠିଲା। ସେ ଭାତଖିଆ ପାଖରୁ ଉଠି ଆନନ୍ଦରେ କରତାଳି ଦେଇ ନାଚି ନାଚି ପ୍ରଭୁଙ୍କ ମହିମା ଗାନରେ ବାଇପ୍ରାୟ ହୋଇ ବୁଲିଲେ। କବି ଭକ୍ତ ରାମଦାସ ଭକ୍ତ ବାଲଗାଁ ଦାସଙ୍କର ଏତାଦୃଶ ଘଟଣାକୁ ଲୋକମୁଖରୁ ଶୁଣି 'ଦାର୍ଢ୍ୟତା ଭକ୍ତି ରସାମୃତ'ରେ ଲେଖିଛନ୍ତି—

"ସୁରଙ୍ଗ ଦିଶେ ହାଣ୍ଡି ଧାର । ମଧ୍ୟେ ଧବଳ ପେଜ ସର ॥
ତା' ମଧ୍ୟେ ଶାଗ ଦିଶେ କଳା । ବୋଲେ ଏ ଶ୍ୱେତପଦ୍ମ ଡୋଳା ॥

ମୁଁ ଏହା ଖାଇବ କେମନ୍ତେ । ବୋଲି ଭାବନା କରି ଚତ୍ତେ ॥
ଦେହ ହୋଇଲା କମ୍ପମାନ । ବଦନୁ ନସ୍ପୁରେ ବଚନ ॥
ନେତ୍ର ଯୁଗଳୁ ଲୁହ ଗଳେ । ଟାଙ୍କୋଲି ଗଲା ରୋମାବଳୀ ॥
ଉଠିଲା ବାଇ ପ୍ରାସ୍ଥ ହୋଇ । କାହାକୁ ଅବା କସ କହି ॥
କରେ ବଜାଇ କରତାଳ । ରଙ୍ଗେ ନାଚଇ ଢଳ ଢଳ ॥”

ଏହା ଦେଖି ବାଲିଗାଁ ଦାସଙ୍କ ପତ୍ନୀ ପଡ଼ଶାଙ୍କୁ ଡାକ ହୋବାଳି ପକାଇଲେ । ସମସ୍ତେ ଧାଇଁ ଆସି ଦାସିଆଙ୍କର ଏହି ଭାବୋନ୍ମତ୍ତତା ଦେଖି ତାଙ୍କର ଭକ୍ତିଭାବନାର ଏକାଗ୍ରତା ସମ୍ବନ୍ଧରେ ହୃଦୟଙ୍ଗମ କରିନପାରି, ତାଙ୍କୁ ପାଗଳ ବୋଲି କହିଲେ । ସେମାନଙ୍କ କଥାକୁ ଭ୍ରୂକ୍ଷେପ ନକରି, ପ୍ରଭୁଙ୍କ ଚିନ୍ତାରେ ଅହରହ ଅନନ୍ୟମନସ୍କ ଭାବରେ ବିତେଇ ଭକ୍ତ ଦାସିଆ ସେ ଅଞ୍ଚଳରେ ଏକ ପାଗଳ ଭକ୍ତ ନାମରେ ପ୍ରସିଦ୍ଧ ହୋଇଗଲେ । ଧୀରେ ଧୀରେ ତାଙ୍କର କାର୍ଯ୍ୟକଳାପ ଓ ସ୍ୱଭାବ ତଥା ମହାପ୍ରଭୁଙ୍କ ପାଦରେ ଏକାଗ୍ର ଭକ୍ତି ଦେଖି ଲୋକମାନେ ତାଙ୍କ ପ୍ରତି ଶ୍ରଦ୍ଧା ଓ ଆଦର ଦେଖାଇଲେ । କିନ୍ତୁ ଭକ୍ତର ହୃଦୟ କାହାରି ନିନ୍ଦା ପ୍ରଶଂସାକୁ ଭ୍ରୂକ୍ଷେପ କରେନାହିଁ, ମାନ ଅପମାନ ଆଡ଼କୁ ଥରେ ହେଲେ ସୁଦ୍ଧା ଧ୍ୟାନ ଦିଏ ନାହିଁ । ଭକ୍ତ ଚାହେଁ ଅନ୍ତରର ସହିତ ଆକୁଳ କଣ୍ଠରେ ପ୍ରଭୁଙ୍କୁ ପାଇବାଲାଗି ଭଜନ କରିବ । ସେଇଥିରେ ହିଁ ତାଙ୍କର ଆନନ୍ଦ, ମୋକ୍ଷ ତଥା ବ୍ରହ୍ମପ୍ରାପ୍ତି ।

ଭକ୍ତ-ପ୍ରବର ଦାସିଆ ଦୃଢ଼ଭାବରେ ପ୍ରଭୁଙ୍କ ପାଦପଦ୍ମରେ ଲକ୍ଷ୍ୟରଖି ଭଜନ କରିବାରେ ଲାଗିଲେ । ସେ ମନ ମଧ୍ୟରେ ସବୁବେଳେ ଭାବୁଥାଆନ୍ତି—ସତେ କଣ ପ୍ରଭୁ ସଦୟହୋଇ ମୋତେ ଦର୍ଶନ ଦେବେ ? ଭକ୍ତଙ୍କର ଏହି କରୁଣ ନିବେଦନ ପ୍ରଭୁଙ୍କ ହୃଦୟକୁ ତରଳାଇଦେଲା । ସେ ଭକ୍ତର ମନୋବାଞ୍ଛା ପୂରଣଲାଗି ରତ୍ନ ସିଂହାସନ ତ୍ୟାଗକରି ଭକ୍ତର ଦୀନ କୁଟୀରରେ ପଦାର୍ପଣ କଲେ । ଭକ୍ତ ଦାସିଆ ଶୟନ କରିଥିବା ସମୟରେ ପ୍ରଭୁ ଆସି ତାଙ୍କର ମୁଣ୍ଡପାଖରେ ବସିଲେ । ସେହି ଦେବଦୁର୍ଲ୍ଲଭ ମୂର୍ତ୍ତିର ସନ୍ଦର୍ଶନରେ ଭକ୍ତ ଦାସିଆ ବିହ୍ୱଳ ହୋଇଗଲେ । ସେ ସେହି ବିହ୍ୱଳତାର ସହିତ କହିଲେ—

“ରଥେ ମୁଁ ଦେଖିଥିଲି ଯାହା । ସାକ୍ଷାତେ ଦେଖିଲିଁ ତାହା ॥
ବ୍ରହ୍ମା ଇନ୍ଦ୍ରାଦି ସୁରାସୁର । ଯକ୍ଷ ଗନ୍ଧର୍ବ ଯେ କିନ୍ନର ॥
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣ । ଚିନ୍ତନ୍ତି ଯେ ହରିଚରଣ ॥
ମନେ କରନ୍ତି ନିତ୍ୟୋଦ୍ଭବ । ତାଙ୍କୁ ତୋ ଦର୍ଶନ ଦୁର୍ଲ୍ଲଭ ॥
ମୁଁ ଯେ ଅଜ୍ଞାନୀ ହୀନଜାତି । ନାହିଁ ମୋ ଭକ୍ତି କି ସ୍ତୁତି ॥
ବାଞ୍ଛା କଲ ମୋର ପୂର । ହେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର ॥”

ଭକ୍ତଙ୍କର ଏହି ବିନମ୍ର ନିବେଦନ ଶୁଣିବା ପରେ ପ୍ରଭୁ ତାଙ୍କୁ ଈପ୍ସିତ ବର ଦେବା ଲାଗି ପ୍ରକାଶ କଲେ; କିନ୍ତୁ ପ୍ରଭୁଙ୍କ ଦର୍ଶନରେ ଯେ ଭୋଳ, ସେ ଅବା କାହିଁକି ପାର୍ଥିବ

ସୁଖ ଭୋଗର ଇଚ୍ଛାରେ ନିଜ ପତନର ମାର୍ଗ ପରିଷ୍କାର କରିବ ? ମୋକ୍ଷକାମୀ ଭକ୍ତ ଦାସିଆ ପ୍ରଭୁଙ୍କ କରୁଣାରେ ବାହ୍ୟଜ୍ଞାନ ହରାଇ, ସାଂସାରିକ ସୁଖଭୋଗକୁ ତୁଚ୍ଛ ମନେକରି, ଯମଦେବଙ୍କ ପ୍ରଲୋଭନକୁ ଏଡ଼ାଇ ଧର୍ମାକାଂକ୍ଷୀ ବାଳକ ନଚିକେତା ମୃତ୍ୟୁରହସ୍ୟ ଜାଣିବାପରି, ପ୍ରଭୁଙ୍କର ଦର୍ଶନ ଅଭିଳାଷୀ ହୋଇ ପ୍ରାର୍ଥନା କଲେ—

"ପଦ୍ମ ଚରଣ ତୁମ୍ଭ ଭାବ । କୋଟିଏ ବାର ଲୁଚିଯିବ ॥
ବରେ ମୋ ପ୍ରୟୋଜନ ନାହିଁ । ଏତିକ ଦେବ ଭାବଗ୍ରାହୀ ॥
ତୋ ଭକ୍ତମାନଙ୍କ ଚରଣେ । ମୋ ମନ ଥାଉ ଅନୁକ୍ଷଣେ ॥
ଯେବେ ମୁଁ ମନରେ ଭାବିବି । ତୁମ୍ଭ ଦର୍ଶନ ପାଉଥିବି ॥
ଏ ବର ମୋତେ ଆଜ୍ଞାହେଉ । ଅଧିକ ଲୋଡ଼ାନାହିଁ ଆଉ ॥"

ପ୍ରଭୁ ଭକ୍ତ ଦାସିଆଙ୍କର ଏପରି ଅନାସକ୍ତ ଭାବରେ ମୁଗ୍ଧହୋଇ, ତାଙ୍କୁ ଧନ୍ୟ ଧନ୍ୟ କହିବା ସଙ୍ଗେ ସଙ୍ଗେ ଇପ୍ସିତ ବରଦାନ ଦେଇଥିଲେ । ଆହୁରି ମଧ୍ୟ ଭକ୍ତ ଦାସିଆ ଯେଉଁ ଦ୍ରବ୍ୟ ଦେବେ ପ୍ରଭୁ ତାହା ଶ୍ରୀହସ୍ତ ବଢ଼ାଇ ଗ୍ରହଣ କରିବାର ଆଜ୍ଞାଦେଇ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସ୍ୱଚକ୍ଷୁରେ ଦେଖି ଭକ୍ତ ଦାସିଆ ପରଦିନ ପ୍ରଭାତରୁ ଉଠି ବରଦାନର ପ୍ରତ୍ୟକ୍ଷତା ଅନୁଭବ କରିବା ଲାଗି ତତ୍ପର ହୋଇଉଠିଲେ । ସେ ପୂର୍ବଦିନ ବୁଣିଥିବା ଖଣ୍ଡେ ଲୁଗା ନେଇ ଜନୈକ ବ୍ରାହ୍ମଣ ଦ୍ୱାରରେ ଉପସ୍ଥିତ ହେଲେ । ଲୁଗା ବୁଣିଥିବା ମଜୁରି ବାବଦ ସେ ବ୍ରାହ୍ମଣଙ୍କଠାରୁ ପଇସା ଆଣିବାକୁ ଯାଇ ଦେଖିଲେ, ବ୍ରାହ୍ମଣଙ୍କ ଦ୍ୱାର ସମ୍ମୁଖରେ ଗୋଟିଏ ନଡ଼ିଆ ଗଛରେ ପ୍ରଥମ ଫଳ ଧରିଛି । ଲୁଗାବୁଣା ମଜୁରି ବିନିମୟରେ ସେଠାରୁ ନଡ଼ିଆଟିଏ ଆଣି ଶ୍ରୀକ୍ଷେତ୍ର ଯାତ୍ରୀ ଅନ୍ୟଜଣେ ବ୍ରାହ୍ମଣଙ୍କୁ ଦେଇ କହିଲେ—

"ଏ ମୋ ଶ୍ରୀଫଳ ଗୋଟି ଧରି । ଗରୁଡ଼ ପଛେ ରହିକରି ॥
ବୋଲିବ ବାଲଗ୍ରାମ ଦାସ । ଦେଇଛି ନିଅ ପୀତବାସ ॥
ସେ ଯେବେ ଶ୍ରୀହସ୍ତ ବଢ଼ାଇ । ତୁମ୍ଭର ହସ୍ତରୁ ଛଡ଼ାଇ ॥
ଘେନବେ ତେବେ ତାଙ୍କୁ ଦେବ । ନୋହିଲେ ଆଣି ମୋତେ ଦେବ ॥"

ଏଭଳି ପାଗଳାମି କଲେ କିଏ ବା ନ ହସିବ ? କିନ୍ତୁ କିଏ ଜାଣେ ଭକ୍ତ ବାଲଗାଁ ଦାସଙ୍କର ଏହା ପାଗଳାମି ନାଁ ପ୍ରକୃତରେ ମହାପ୍ରଭୁ ଶ୍ରୀ ଜଗନ୍ନାଥ ଦେବଙ୍କର ଶ୍ରୀମୁଖ ଆଦେଶ ! ବ୍ରାହ୍ମଣ ହସି ହସି ଦାସିଆଙ୍କ ହାତରୁ ନଡ଼ିଆଟି ନେଇ, ପୁରୀ ଅଭିମୁଖେ ଯାତ୍ରାକଲେ ଏବଂ ସେଠାରେ ନିଜର ଭୋଗ ସାମଗ୍ରୀ ଅର୍ପଣପରେ, ମହାପ୍ରସାଦ ସେବନପୂର୍ବକ ଆନନ୍ଦମନରେ ଘରକୁ ବାହୁଡ଼ିବା ସମୟରେ, ତାଙ୍କର ମନେପଡ଼ିଲା ଦାସିଆଙ୍କ ନଡ଼ିଆ କଥା । ସେ ଭକ୍ତଙ୍କ କହିବା ମତେ ଗରୁଡ଼ ପଛରେ ଛିଡ଼ାହୋଇ ଆଖିବୁଜି ନଡ଼ିଆଟିକୁ ଶ୍ରୀ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଅର୍ପଣକଲେ । କିନ୍ତୁ କି ଆଶ୍ଚର୍ଯ୍ୟ !

ବ୍ରାହ୍ମଣଙ୍କ ହସ୍ତରୁ ତତ୍‌କ୍ଷଣାତ୍ ନଡ଼ିଆଟି କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା । ଏହା ପ୍ରତ୍ୟକ୍ଷ ଅନୁଭବକରି ବିପ୍ରବର, ଦାସିଆଙ୍କ ଭକ୍ତିଭାବରେ ଆତ୍ମହରା ହୋଇଗଲେ ଏବଂ ମନେମନେ ଅଚ୍ଛୁତ ବାଲ୍‌ଗାଁ ଦାସଙ୍କ ପରମ ସୌଭାଗ୍ୟକୁ ଚିନ୍ତାକରି ପାଗଳଙ୍କ ପରି ଶ୍ରୀମନ୍ଦିରରେ ସେହି ଆଖ୍ୟାନ ବର୍ଣ୍ଣନା କଲେ । ଲୋକମାନେ ସେହିଦିନଠାରୁ ବାଲ୍‌ଗାଁ ଦାସଙ୍କ ନିଷ୍ଠା ଓ ଶ୍ରୀ ଜଗନ୍ନାଥଙ୍କ ପ୍ରତି ତାଙ୍କ ଭକ୍ତି ଭାବନା ସମ୍ବନ୍ଧରେ ଅବଗତ ହେଲେ ଏବଂ ଶ୍ରୀକ୍ଷେତ୍ର ଓ ଆଖପାଖ ଅଞ୍ଚଳରେ ଦାସିଆଙ୍କ ନାମରେ ଚହଲ ପଡ଼ିଗଲା ।

ଅନ୍ୟ ଗୋଟିଏ ଦିନର ଘଟଣା । ବାଲ୍‌ଗାଁ ଦାସ ଶ୍ରୀକ୍ଷେତ୍ରକୁ ଯିବାପାଇଁ ମନ ବଳାଇଲେ । ଶୂନ୍ୟହସ୍ତରେ କିପରି ଯାଇ ପ୍ରଭୁଙ୍କୁ ଦର୍ଶନ କରିବେ ? ତେଣୁ ସେ ଗ୍ରାମରୁ 'ଦଶପୁଞ୍ଜା' ଆମ୍ବ ନେଇ ପୁରୀଧାମରେ ଉପସ୍ଥିତ ହେଲେ । ସେ ଲୋଭଣିଆ ଆମ୍ବଗୁଡ଼ିକୁ ଦେଖି ପଣ୍ଡାମାନେ ଦାସଙ୍କୁ ଘେରିଯାଇ ପ୍ରଭୁଙ୍କ ନିକଟରେ ଅର୍ପଣକରି ଦେବାର ମିଥ୍ୟା ଛଳନାମାନ କଲେ; କିନ୍ତୁ ଯେ ସ୍ୱୟଂ ମହାପ୍ରଭୁଙ୍କର ଅଭୟ ପାଇଛନ୍ତି, ଲୁବ୍ଧ ଲୋଭାସକ୍ତ ପଣ୍ଡାମାନେ ତାଙ୍କୁ କିପରି ଭୁଲାଇ ପାରିବେ ? ପଣ୍ଡାମାନେ ଦାସଙ୍କଠାରୁ ଆମ୍ବତକ ଠକିନେବାପାଇଁ ନିଜ ନିଜ ମଧ୍ୟରେ କଳି-ତକରାଳ ଲଗାଇଲେ । ଏହା ଦେଖି ଭକ୍ତ ପ୍ରବର ଦାସିଆ ପ୍ରଭୁଙ୍କୁ ମନେ ମନେ ଚିନ୍ତାକରି, ଆମ୍ବଗୁଡ଼ିକ ଯୋଡ଼ି ଯୋଡ଼ି କରି ହସ୍ତ ଅଞ୍ଜଳିରେ ଉପରକୁ ଟେକିଦେଲେ । ପଣ୍ଡାମାନଙ୍କ ଉପସ୍ଥିତିରେ ଆମ୍ବଗୁଡ଼ିକ ଶୂନ୍ୟେ ଶୂନ୍ୟେ ଉଭେଇଗଲା । ଏହା ଦେଖି ସମସ୍ତେ ବିସ୍ମୟାଭିଭୂତ ହୋଇପଡ଼ିଲେ ।

ଆହୁରି ବିସ୍ମୟାବହ ବିଷୟ ହେଲା—ପଣ୍ଡାମାନେ ଭକ୍ତ ଦାସିଆଙ୍କ କୃତ୍ୟକୁ ଅଦ୍ଭୁତ ଯାଦୁବିଦ୍ୟା ମନେକରି ରତ୍ନସିଂହାସନ ନିକଟକୁ ଧାଇଁଗଲେ । ସେଠାରେ ଦେଖିଲେ— ଟାକୁଆ ଓ ଗୋପାମାନ ପଡ଼ିଛି । ତା'ପରେ ସେମାନଙ୍କ ମନରେ ଦାସିଆଙ୍କ ପ୍ରତି ଶ୍ରଦ୍ଧା ଜାତହେଲା ଏବଂ ସେମାନେ ପ୍ରଭୁଙ୍କ ଧଣ୍ଡାମାଳ ନେଇ ଦାସିଆଙ୍କୁ ଅର୍ପଣ କରି, ତାଙ୍କର ଭକ୍ତିଭାବକୁ ଶତମୁଖରେ ପ୍ରଶଂସାକଲେ ।

ଏହା ଶୁଣି ଭକ୍ତ ପ୍ରବର ଦାସିଆ ପଣ୍ଡାମାନଙ୍କ ପାଦରେ ସାଷ୍ଟାଙ୍ଗ ପ୍ରଣାମ କରି ନିଜର ବିନୀତ ଭାବ ପ୍ରକାଶ କରିବା ସଙ୍ଗେ ସଙ୍ଗେ ପ୍ରଭୁଙ୍କ ଗୁଣ-ଗାନକରି କହିଲେ—

"ଅନେକ ଦଣ୍ଡବତ କରି । ବୋଲଇ ମୋ ଗୁରୁ ବାହୁରି ॥
ମୋଠାରେ ଏଡ଼େ କୃପାକଲ । ତେଣୁ ମୋହର ଭାଗ୍ୟ ଭଲ ॥"

ତତ୍ପରେ ଦାସିଆ ପ୍ରଭୁଙ୍କୁ ମନେ ମନେ ସ୍ମରଣ କରି ନୀଳଚକ୍ରରେ ମତ୍ସ୍ୟାଦି ଦଶାବତାର ଦେଖିବା ଲାଗି ପ୍ରଭୁଙ୍କ ପାଦପଦ୍ମରେ ନିବେଦନ ଜଣାଇଲା । ମହାପ୍ରଭୁ ଭକ୍ତର ମନୋବାଞ୍ଛା ପୂରଣନିମିତ୍ତ ନୀଳଚକ୍ରରେ ମତ୍ସ୍ୟ, କୂର୍ମାଦି ଦଶବିଧରୂପ ପ୍ରଦର୍ଶନ କରାଇ ଭକ୍ତ ବାଲ୍‌ଗାଁ ଦାସଙ୍କର ଅଭିଳାଷ ପୂର୍ତ୍ତି କଲେ । ଭକ୍ତକବି ରାମଦାସ ଏହି ଚରିତଟିକୁ ସ୍ୱଭକ୍ତମାଳା ପୁସ୍ତକରେ ବର୍ଣ୍ଣନା କରି ଲେଖିଛନ୍ତି—

"ଏମନ୍ତେ ବିଚାରନ୍ତେ ଚିତ୍ତେ । ତାହା ଜାଣିଲେ ଜଗନ୍ନାଥେ ॥
ନୀଳଚକ୍ରରେ ବିଜେ କରି । ଯେବଣ ବିଧି ରୂପ ଧରି ॥
ମତ୍ସ୍ୟ କଲଙ୍କ ରୂପ ଯାଏ । ଦର୍ଶନ ଦେଲେ ଦେବରାୟେ ॥
ଦାସେ ଦେଖିଲେ ଚର୍ମ ଡୋଳେ । ତକ୍ଷଣେ ପଡ଼ି ମହୀତଳେ ॥
ବୋଇଲା ନିସ୍ତରିଲି ମୁହିଁ । ତୋ' କୃପା ଆହ୍ଲାଦ ପାଇ ॥"

ପ୍ରଭୁଙ୍କ ଅପାର କରୁଣା ଲାଭକରି ଭକ୍ତ ପ୍ରବର ସାଂସାରିକ ସୁଖସ୍ୱାଚ୍ଛନ୍ଦ୍ୟକୁ ତୁଚ୍ଛ ମନେକରି ଶ୍ରୀଜଗନ୍ନାଥଙ୍କ ମହିମା ଗାନରେ କାଳ ଅତିବାହିତ କଲେ । ଭକ୍ତ ବାଲିଗାଁ ଦାସଙ୍କର ଏତାଦୃଶ ମହିମା ଜନମୁଖରେ ଗୃହେଁ ଗୃହେଁ ପ୍ରଚାରିତ ହୋଇଗଲା । କେବଳ ଶ୍ରୀକ୍ଷେତ୍ର ଓ ତାର ଆଖପାଖ ଅଞ୍ଚଳରେ ନୁହେଁ, ଭକ୍ତ ଦାସିଆ ବାଉରିଙ୍କ ଭକ୍ତିଭାବନାର ମହିମା ସମଗ୍ର ଉତ୍କଳରେ ପ୍ରସ୍ଫୁରିତ ହୋଇଥିଲା । ଭକ୍ତପ୍ରବର ରାମଦାସ ସୁଦୂର ଗଞ୍ଜାମ ଜିଲ୍ଲାର ଋଷିକୁଲ୍ୟା ତଟରେ ବାସ କରୁଥିଲେ ମଧ୍ୟ ଭକ୍ତ ଶିରୋମଣି ଦାସିଆ ବା ବାଲିଗାଁ ଦାସଙ୍କ ମହିମା ଶୁଣିବାକୁ ପାଇଲେ ଏବଂ ସେ ସେହି ଘଟଣାକୁ ସ୍ୱରଚିତ ଭକ୍ତଚରିତ 'ଦାର୍ଢ୍ୟତା ଭକ୍ତି ରସାମୃତ'ରେ ଲିପିବଦ୍ଧକରି ସମଗ୍ର ଉତ୍କଳରେ ପ୍ରଚାରକଲେ ।

ଆଜି ଆମ ସମ୍ମୁଖରେ ସେହି ଭକ୍ତପ୍ରବର ବାଲିଗାଁ ଦାସ କିମ୍ବା ଭକ୍ତକବି ରାମଦାସ ନାହାନ୍ତି; ଅଛି କେବଳ 'ଦାର୍ଢ୍ୟତା ଭକ୍ତି ରସାମୃତ' ପୁସ୍ତକ । ସେହି ପୁସ୍ତକ ମାଧ୍ୟମରେ ଆଜି କେଉଁ ଯୁଗର ଭକ୍ତ ଦାସିଆ; ଉତ୍କଳର ଘରେ ଘରେ ସୁପରିଚିତ ଏବଂ ତାଙ୍କ ଚରିତାବଳୀ ଉତ୍କଳୀୟ ଭକ୍ତଜନତାର କଣ୍ଠହାର ହୋଇ ରହିଛି । □□□

# ଭକ୍ତ ଦାସିଆଙ୍କ ରଚନା

ଓଡ଼ିଶାର ସ୍ୱନାମଧନ୍ୟ ଭକ୍ତ ଦାସିଆ ଅଛୁଆକୁଳରେ ଜନ୍ମଗ୍ରହଣ କରି ନିଜ ଭକ୍ତିବଳରେ ଶ୍ରୀଜଗନ୍ନାଥଙ୍କୁ ରତ୍ନସିଂହାସନରୁ ନିଜ ଗ୍ରାମ ବାଲିଗ୍ରାମ ବା ବାଲିଗାଁ ପର୍ଯ୍ୟନ୍ତ ଟାଣି ଆଣି ପାରିଥିଲେ । ଭକ୍ତ ଦାସିଆ ବାଉରି କୁଳରେ ଜନ୍ମ ହୋଇ, ଲୁଗାବୁଣି ନିଜର ଜୀବିକା ନିର୍ବାହ କରୁଥିଲେ; କିନ୍ତୁ ଆଜନ୍ମରୁ ତାଙ୍କ ହୃଦୟରେ ଆଧ୍ୟାତ୍ମିକଭାବ ଜାଗ୍ରତ ରହିଥିଲା; ତେଣୁ ସେ ସର୍ବଦା ସାଧୁ ସନ୍ଥଙ୍କ ମେଳରେ କାଳ କଟାଇବାକୁ ଅହୋରାତ୍ର ମଣୁଥିଲେ । ପରବର୍ତ୍ତୀକାଳରେ ତାଙ୍କ ନିଷ୍ଠାରେ ଶ୍ରୀଜଗନ୍ନାଥ ମହାପ୍ରଭୁ ବଶୀଭୂତ ହୋଇ ଭକ୍ତର ଇଚ୍ଛାମତେ ତାଙ୍କୁ ଦର୍ଶନଦେବା ଲାଗି ବର ଦେଇଥିଲେ । ଯେଉଁଭଳି ବର ପାଇବା ଲାଗି ବ୍ୟାସ, ସନକ, ନାରଦାଦି ମୁନିମାନେ ଯୁଗ ଯୁଗ ତପସ୍ୟାରେ ରତଥିଲେ, ସେଭଳି ଅଲଭ୍ୟ ବର ପାଇବା ଦାସିଆଙ୍କ ପକ୍ଷରେ କଷ୍ଟସାଧ୍ୟ ହେଲନାହିଁ । ତେଣୁ ସାରା ଜୀବନ ସେ ଶ୍ରୀଜଗନ୍ନାଥଙ୍କ କୃପାପାତ୍ର ହୋଇ ରହିଥିଲେ ।

ଯେଉଁ କୃପାବଳରେ ପଙ୍ଗୁ ପର୍ବତ ଲଙ୍ଘନ କରେ, ମୂକ ବାଗ୍ମଳରେ ପଣ୍ଡିତ ହୁଏ, ସେଭଳି ସ୍ୱର୍ଗୀୟ କୃପା ଲାଭ କରି ଭକ୍ତ ଦାସିଆ କେବଳ ଭକ୍ତିଭାବରେ ବୁଡ଼ି ରହିଥିଲେ ଏବଂ ଭକ୍ତିଭାବର ପ୍ରଚାର ଉଦ୍ଦେଶ୍ୟରେ କେତେକ ପୁସ୍ତକ ତଥା ପଦ୍ୟାବଳୀ ରଚନା କରିଥିଲେ । ତାଙ୍କ ରଚିତ ପୁସ୍ତକ ବର୍ତ୍ତମାନ ପାଠକମାନଙ୍କ ହସ୍ତଗତ ହୋଇଛି କି ନାହିଁ ଏବଂ କେଉଁ କେଉଁ ପୁସ୍ତକ ରଚନା କରି ଓଡ଼ିଆ ସାହିତ୍ୟର କେଉଁ ବିଭାବକୁ ଉନ୍ନତ କରିଥିଲେ, ତାହା ହିଁ ପ୍ରସ୍ତୁତ ଅଧ୍ୟାୟର ଆଲୋଚ୍ୟ ବିଷୟ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ବାଲିଗାଁ ଦାସିଆଙ୍କ ନାମରେ ଭଣିତ 'ଆଗତ ଭବିଷ୍ୟ' ବା 'ବାଲିଗାଁ ଦାସିଆ ଭାଗବତ' ଓ 'ଭକ୍ତିମାଳିକା' ଶୀର୍ଷକଦୁଇଖଣ୍ଡ ତାଳପତ୍ର ପୋଥି ସଂରକ୍ଷିତ ହୋଇଛି । ତନ୍ମଧ୍ୟରୁ ପ୍ରଥମୋକ୍ତ ପାଣ୍ଡୁଲିପି 'ବାଲିଗାଁ ଦାସିଆ ଭାଗବତ' ପୋଥିଟି ପାଞ୍ଚୋଟି ଅଧ୍ୟାୟରେ ବିଭକ୍ତ । ପୁସ୍ତକଟିର ମୋଟ ପଦ ସଂଖ୍ୟା ପାଞ୍ଚଶହ ଏକଚାଳିଶ । ପ୍ରତ୍ୟେକ ଅଧ୍ୟାୟର ପଦ ଗଣନାରୁ ଜଣାଯାଏ ଯେ, ପ୍ରଥମ ଅଧ୍ୟାୟରେ ୧୦୨ ପଦ, ଦ୍ୱିତୀୟ—୧୦୪ ପଦ, ତୃତୀୟ—୧୧୩ ପଦ, ଚତୁର୍ଥ—୧୦୯ ପଦ ଓ ପଞ୍ଚମ—୧୦୩ ପଦ ରହିଛି । ଅବଶ୍ୟ ଦୁଇଟି ପୋଥିର ପାଠ ଏକତ୍ର ମିଶାଇ ଏଠାରେ ପଦସଂଖ୍ୟାର ଉଲ୍ଲେଖ କରାଯାଇଛି, ମାତ୍ର ଗୋଟିଏ ପୋଥିର ପଦ ସଂଖ୍ୟାଠାରୁ ଅନ୍ୟ ପୋଥିଟିର ପଦସଂଖ୍ୟା ଊଣା ଅଧିକ ରହିଛି । ହୁଏତ ଏ ପ୍ରକାର ବ୍ୟତିକ୍ରମ ମୂଳରଚନାରେ ନ ଥିବ,

କିନ୍ତୁ ପରବର୍ତ୍ତୀକାଳର ନକଲକାର ଓ ଅଞ୍ଚଳ ଭେଦରେ ପଦସଂଖ୍ୟାର ବ୍ୟତିକ୍ରମ ଦେଖାଯିବା ଆଦୌ ଅସମ୍ଭବ ନୁହେଁ ।

ଅବଶ୍ୟ ଏଠାରେ ପ୍ରଶ୍ନ ଉଠେ—ପ୍ରାୟ ଅଢ଼େଇ ଶହ ବର୍ଷ ତଳର ଭକ୍ତ ବାଲିଗାଁ ଦାସିଆ ବାଉରି କୁଳରେ ଜନ୍ମ ଗ୍ରହଣ କରି ଗ୍ରନ୍ଥରଚନା କରିବା ଭଳି ଶିକ୍ଷା ଲାଭ କରିଥିବାର କିଛି ପ୍ରମାଣ ମିଳେକି ? ସେ ଯୁଗରେ ସାଧାରଣ ଉଚ୍ଚବର୍ଗୀୟ ବ୍ୟକ୍ତିମାନେ କେବଳ ଚାମଚଟା ପାଠ ପଢ଼ୁଥିବାବେଳେ, ବାଉରି କୁଳରେ ଜାତ ଦାସିଆ କିପରି ଗ୍ରନ୍ଥ ରଚନା କରିବା ଭଳି ଉନ୍ନତ ଜ୍ଞାନର ଅଧିକାରୀ ହୋଇପାରିଲେ ? ଏହି ଶଙ୍କାର ସମାଧାନ ଲାଗି ଏତିକି କୁହାଯାଇପାରେ ଯେ, ଯେଉଁ ଭକ୍ତମାନେ ପ୍ରଭୁଙ୍କ କୃପା କଣିକା ଲାଭକରି ଦିବ୍ୟ ଆଧ୍ୟାତ୍ମିକ ଜ୍ଞାନର ଅଧିକାରୀ ହୋଇ ପାରିଥିଲେ, ସେଭଳି ଦିବ୍ୟ ଭାବାପନ୍ନ ବ୍ୟକ୍ତି ପକ୍ଷରେ କିଛି ଅସମ୍ଭବ ନୁହେଁ । ଜନ୍ମମୂର୍ଖ କାଶୀ ଧାମର କବିର ଦାସ ହଜାର ହଜାର ବ୍ରହ୍ମଜ୍ଞାନ ମୂଳକ ପଦ ରଚନା କରିଛନ୍ତି । ହିନ୍ଦୀଜଗତର ଶ୍ରେଷ୍ଠ ବୈଷ୍ଣବ କବି ସୁର ଦାସ ଜନ୍ମାନ୍ଧ ଥିଲେ ମଧ୍ୟ ତାଙ୍କ ମୁଖ ନିସୃତ ଲକ୍ଷସଂଖ୍ୟକ ପଦ ହିନ୍ଦୀ ସାହିତ୍ୟର ଶୋଭା ବର୍ଦ୍ଧନ କରୁଛି । ସେହିପରି ଅକ୍ଷର ଜ୍ଞାନ ଶୂନ୍ୟ ହୋଇଥିଲେ ମଧ୍ୟ ଭକ୍ତ ବାଲିଗାଁ ଦାସ ପୁସ୍ତକ ଓ ପଦାବଳୀ ରଚନା କରିଥିବା ଅସମ୍ଭବ ନୁହେଁ । ଶ୍ରୀ ଜଗନ୍ନାଥଙ୍କ କୃପା ଫଳରେ ସେ ଅଲୌକିକ ପ୍ରତିଭାସମ୍ପନ୍ନ ହେବା ପରେ ସ୍ୱ ମୁଖନିସୃତ ବାଣୀକୁ ତାଙ୍କର ଶିଷ୍ୟବର୍ଗ ସଂଗ୍ରହ କରିଥିବା ଅସମ୍ଭବ ନୁହେଁ । ଏହାର ପ୍ରମାଣ ମଧ୍ୟ ତାଙ୍କକୃତ 'ଭାଗବତ' ବା 'ଆଗତ ଭବିଷ୍ୟ' ପୁସ୍ତକରେ ଦେଖିବାକୁ ମିଳୁଛି । ତାଙ୍କ ନାମରେ ଭଣିତ ପୁସ୍ତକ ଭାଗବତର କଥାବସ୍ତୁ ନିମ୍ନଲିଖିତ ମତେ ଏଠାରେ ପ୍ରଦତ୍ତ ହେଲା ।

ସେ ପୁସ୍ତକର ଆରମ୍ଭରେ ଶ୍ରୀସ୍ୱାଦେବୀ ବର, ଶ୍ରୀଧର, ଶାରଙ୍ଗ, ଗଦା, ଶଙ୍ଖ ହସ୍ତ ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି । ସେହି ପ୍ରସଙ୍ଗରେ ସେ ମତ୍ସ୍ୟ, କଚ୍ଛପ, ଶୂକର, ନୃସିଂହ, ବାମନ, ପରଶୁରାମ, ରାମ, କାହ୍ନୁ, ବଉଦ୍ଧ, ବଳଭଦ୍ର ଆଦି ଦଶାବତାରର ସ୍ତୁତି କରିଛନ୍ତି । ଶ୍ରୀ ଜୟଦେବଙ୍କ ବର୍ଣ୍ଣିତ ଦଶାବତାର ସହିତ ତାଙ୍କ ବର୍ଣ୍ଣିତ ଦଶାବତାରର ସାମଞ୍ଜସ୍ୟ ଶେଷ ତିନୋଟି ଅବତାରରେ ରହିନାହିଁ । ଜୟଦେବ ଶ୍ରୀକୃଷ୍ଣଙ୍କୁ ଅବତାର ରୂପେ ଗ୍ରହଣ ନ କରି ଅବତାରୀ ଅର୍ଥାତ୍ 'ଦଶାକୃତିକୃତ୍' ରୂପେ ବର୍ଣ୍ଣନା କରିଥିବାସ୍ଥଳେ, କବି ବାଲିଗାଁ ଦାସ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ସେହି ସ୍ଥାନରେ ବସାଇ ଶ୍ରୀକୃଷ୍ଣଙ୍କୁ ଅବତାର ରୂପେ ଚୟନ କରିଛନ୍ତି । ଶେଷ ଅର୍ଥାତ୍ ଦଶମ ଅବତାରରୂପେ ଜୟଦେବ କଳ୍କିଙ୍କୁ ବର୍ଣ୍ଣନା କରିଥିବାସ୍ଥଳେ ଦାସିଆ ବାଉରି ଅନନ୍ତ କେଶରୀ ରୂପଧାରୀ ବଳଦେବ ମହାପ୍ରଭୁଙ୍କୁ ଦଶମ ଅବତାର ରୂପେ ସ୍ୱ ପୁସ୍ତକରେ ଉଲ୍ଲେଖ କରିଛନ୍ତି । କେବଳ ଏହିଠାରେ ନୁହେ, ପୁସ୍ତକର ପଞ୍ଚମ ଅଧ୍ୟାୟରେ- "ତଦନ୍ତେ ଅନନ୍ତ କେଶରୀ । ରାଜା ହେଁ କରିବୁ ବିଚାରି ।।" ବୋଲି ଉଲ୍ଲେଖ କରିଛନ୍ତି ।

"ହେନେ ଶ୍ରୀ ଜଗନ୍ନାଥ ଦିବ୍ୟ ବ୍ରାହ୍ମଣ ରୂପ ଧାରଣକରି ବାଲିଗାଁ ଦାସଙ୍କ ତନ୍ତଶାଳ ନିକଟରେ ପ୍ରବେଶହୋଇ ଭକ୍ତଙ୍କୁ ଡାକପକାଇଛନ୍ତି—

ଡାକନ୍ତ ବାଲଗାଁ ଦାସକୁ । ଆମ୍ଭେ ଅଇଛୁ ତୋ ପୁରକୁ ॥
ବହନ ଉଠିଆସ ଦାସେ । ଡାକ ଫୁଟିଲେ ପୀତବାସେ ॥
(ପ୍ରଥମ ଅଧ୍ୟାୟ, ୨୧, ୨୨ ପଦ)

ପ୍ରଭୁଙ୍କ କନ୍ଧରେ ପଇତା ଶୋଭା ପାଉଥିଲା । ସେ ପାଞ୍ଚ ପିନ୍ଧ, ହାତରେ ଲେଖନ ସଞ୍ଚା ଧରି ତନ୍ତ ନିକଟରେ ଉପସ୍ଥିତ ହେଲେ । ତନ୍ତର ଠୂକ୍ ଠୂକ୍ ଶବ୍ଦରେ ଦାସିଆ ପ୍ରଭୁଙ୍କ ଡାକ ଶୁଣିପାରୁ ନଥିଲେ । ତା' ପାଖରେ ବସି ଦାସିଆଣୀ ଲୁଣ୍ଡିରୁ ସୂତା ବାହାର କରୁଥିଲେ । ଏହି ସମୟରେ ହଠାତ୍ ପ୍ରଭୁଙ୍କ ଡାକ ତାଙ୍କ କର୍ଣ୍ଣଗୋଚର ହେଲା । ସେ ବୁଣାବୁଣି କାର୍ଯ୍ୟ ବନ୍ଦକରି ବ୍ରାହ୍ମଣଙ୍କୁ ଦୁଆରେ ଦେଖି ପ୍ରଣାମ କଲେ; କିନ୍ତୁ ହଠାତ୍ ବ୍ରାହ୍ମଣଙ୍କ ଅଙ୍ଗରେ ଦିବ୍ୟତେଜ ଓ ଶଙ୍ଖ-ଚକ୍ରାଦି ଚିହ୍ନ ଦେଖି ଭକ୍ତ ଦାସିଆ ପ୍ରଭୁଙ୍କୁ ଚିହ୍ନି ପାରି ଭୂମିରେ ସାଷ୍ଟାଙ୍ଗ ଦଣ୍ଡବତ କଲେ ।

ପ୍ରଭୁ ଦାସଙ୍କୁ ଉଠାଇ କହିଲେ—
ପ୍ରଭୁ ବୋଲନ୍ତି ଉଠ ଦାସେ । ଆମ୍ଭେ ଅଇଲୁ ତୁମ୍ଭ ପାଶେ ॥
ତୁମ୍ଭଙ୍କୁ ଦେଖିବାର ପାଇଁ । ତେଣୁ ଅଇଲୁ ଆମ୍ଭେ ଧାଇଁ ॥

ପ୍ରଭୁଙ୍କ ଆଶ୍ୱାସନା ବାଣୀରେ ଦାସେ କୃତକୃତ୍ୟ ହୋଇଗଲେ ଏବଂ ଗ୍ରୁର ଭକ୍ତପାଇଁ ପ୍ରଭୁ ଏତେ କଷ୍ଟ ସହୁଛନ୍ତି ବୋଲି ଜଣାଇଲେ । ତହୁଁ ପ୍ରଭୁ ଜାତିଭେଦର ଊର୍ଦ୍ଧ୍ୱରେ ଭକ୍ତର ଭକ୍ତି ବୋଲି କହି ଦାସଙ୍କୁ ପ୍ରବୋଧନା ଦେଲେ । ତା'ପରେ ପ୍ରଭୁ ଦାସିଆଙ୍କ ଘରେ ଭୋଜନ କରିବା ପାଇଁ ମନ ବଳାଇଲେ; କିନ୍ତୁ ଭକ୍ତ ଦାସିଆ ପ୍ରଭୁଙ୍କ ମନକାମନା ପୂରଣ ଲାଗି ଗ୍ଭରିଗୋଟି 'ବାସପଇଡ଼' ଆଣି ସମର୍ପଣ କଲେ । ତା'ପରେ ପ୍ରଭୁ ଭକ୍ତର ଶ୍ରଦ୍ଧା ଉପହାର ଗ୍ରହଣ କରିବା ପରେ, ଦାସିଆଙ୍କ ପୂର୍ବଜନ୍ମ ବୃତ୍ତାନ୍ତ ବ୍ୟାଖ୍ୟାନକଲେ ଏବଂ କଳିଯୁଗରେ ମ୍ଳେଚ୍ଛ ସଂହାର ହେବାର ସୂଚନା ଦେଲେ । ତହୁଁ ଭକ୍ତ ଦାସିଆ ପ୍ରଭୁଙ୍କ ଭକ୍ତିକୁ ପତ୍ରରେ ଲେଖିଦେବା ଲାଗି ଅନୁରୋଧ କରାଇଲେ—

ତୁମ୍ଭେ ତ କହିଲ ଏମନ୍ତ । ଲୋକେ କରିବେଟି କି ସତ ॥
ଆଗତ କରି କହୁ ବାଣୀ । ପତ୍ରେ ଲେଖିବ ଯଦୁମଣି ॥
ଏଠାରୁ ହେବ ଯେତେ କୃତ୍ୟ । ଲେଖିଦା ପ୍ରଭୁ ଜଗନ୍ନାଥ ॥
(ପ୍ରଥମ ଅଧ୍ୟାୟ—୯୨-୯୪ ପଦ)

ଭକ୍ତଙ୍କ ମନୋବାଞ୍ଛା ପୂରଣ ଲାଗି ପ୍ରଭୁ ସଙ୍ଗରେ ଆଣିଥିବା ଲେଖନ ସଞ୍ଚା ଧରି 'ଆଗତ' ଲେଖା ଆରମ୍ଭ କଲେ—

ଲେଖନ ସଞ୍ଚା କରେ ଧରି । ଆଗତ ଲେଖନ୍ତି ଶ୍ରୀହରି ॥
ଲେଖିଲେ ପ୍ରଭୁ ପୀତବାସ । ଶରଣ ବାଲିଗାଁ ଯେ ଦାସ ॥

ଦ୍ୱିତୀୟ ଅଧ୍ୟାୟର ଆରମ୍ଭରେ ପୂର୍ବ ଅଧ୍ୟାୟ ପରି ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତିର ସ୍ତୁତି କରାଯାଇଛୁ । ତା'ପରେ ପ୍ରଭୁ ଲେଖନ ସଞ୍ଚା ଧରି ଉତ୍କଳର ରାଜବଂଶରେ କଏ କଏ

ରାଜା ହେବେ, ସେ ସମ୍ବନ୍ଧରେ ଲେଖିଛନ୍ତି । ସେହି ବର୍ଣ୍ଣନାରୁ ଜଣାଯାଏ—ଓଡ଼ିଶା ଦେଶରେ ପ୍ରଥମେ ଜଗନ୍ନାଥ ଦେବ ରାଜା ହେବେ ଏବଂ ସେ ପଚିଶ ଅଙ୍କ ଭୋଗ କରିବେ । ଏହି ଅଙ୍କ ଗଣନାପଦ୍ଧତି ଓଡ଼ିଶାରେ ଭିନ୍ନ ପ୍ରକାରର ରହିଛି । ସାଧାରଣତଃ ଏକ ସଂଖ୍ୟା ଓ ଶୂନ୍ୟ ତଥା ଛଅ ଥିବା ସଂଖ୍ୟା ଗଣାଯାଏ ନାହିଁ । ସେହି ଦୃଷ୍ଟିରୁ ଜଗନ୍ନାଥ ଦେବ ୩୯ ବର୍ଷ ରାଜତ୍ୱ କରିଥିଲେ । ଜଗନ୍ନାଥଙ୍କ ପୁତ୍ର ଅନନ୍ତ; ସେ ବତିଶ ବର୍ଷ ରାଜତ୍ୱ କରି ଇହଧାମ ତ୍ୟାଗ କରିବେ । ଅନନ୍ତଙ୍କ ପୁତ୍ର ରାମଚନ୍ଦ୍ର ପନ୍ଦର ଅଙ୍କ, ତା'ପରେ ପ୍ରତାପରୁଦ୍ର ଅଠେଇଶ ଅଙ୍କ, ତାଙ୍କ ପୁତ୍ର କରୁଣାକର ରାଜତ୍ୱ କରିବେ । କରୁଣାକରଙ୍କ ପୁତ୍ର ଲଙ୍ଗୁଳା ନରସିଂହ ମାତ୍ର ବାଇଶି ଅଙ୍କ ଭୋଗ କରିବେ । ତା'ପରେ ଗୋବିନ୍ଦ ଓ ଗୋବିନ୍ଦଙ୍କ ପୁଅ କାଳିଆ ନାମକ ବ୍ୟକ୍ତି ରାଜା ହେବେ । ସେହିଠାରୁ ଗଙ୍ଗବଂଶ ଶେଷ ହେବ ।

କାଳିଆ ବୋଲି କରି ପୁତ୍ର । ତାହାର କୁଳେ ହେବ ଜାତ ॥
ତାହାର ତନ୍ତୁ ପାଟ ଶେଷ । ନିଧନ ହେବ ଗଙ୍ଗବଂଶ ॥

(ଦ୍ୱିତୀୟ ଅଧ୍ୟାୟ—୩୩-୩୪ ପଦ)

ଦ୍ୱିତୀୟ ଅଧ୍ୟାୟରେ ବର୍ଣ୍ଣିତ ଗଙ୍ଗବଂଶର ରାଜାମାନଙ୍କ ନାମରୁ ଜଣାଯାଏ ଯେ, ଭକ୍ତ ବାଲିଗାଁ ଦାସ କେତେଜଣ ରାଜାଙ୍କ ନାମ ମାତ୍ର ଲୋକମୁଖରୁ ଶ୍ରବଣ କରିଥିଲେ; ତାଙ୍କର ରାଜବଂଶ ସମ୍ବନ୍ଧରେ ବିଶେଷ ଧାରଣା ନଥିଲା । ବିଶେଷତଃ ତାଙ୍କର ବହୁ ପୂର୍ବବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନଙ୍କ ମଧ୍ୟରୁ ସେ କେବଳ ଅନନ୍ତ ବର୍ମା ଚୋଡ଼ଗଙ୍ଗଙ୍କ ନାମକୁ 'ଅନନ୍ତ' ବୋଲି ଉଲ୍ଲେଖ କରିଛନ୍ତି ଏବଂ ଲଙ୍ଗୁଳା ନରସିଂହ କୋଣାର୍କ-ନିର୍ମାତା ରୂପେ ଓଡ଼ିଶାର ଲୋକମୁଖରେ ବହୁ ପ୍ରଚାରିତ ହୋଇଥିବାରୁ, ତାଙ୍କ ନାମ ମାତ୍ର ଲେଖିଛନ୍ତି । ତଦ୍‌ବ୍ୟତୀତ ତାଙ୍କ ତାଲିକାରେ ଆଉ ଯେତେ ଜଣଙ୍କ ନାମ ରହିଛି ସେମାନେ କେହି ଗଙ୍ଗବଂଶୀୟ ରାଜା ନୁହନ୍ତି ।

ପ୍ରତାପରୁଦ୍ରଦେବ ସୂର୍ଯ୍ୟବଂଶର ଶେଷ ଦାୟାଦ ଥିଲେ । ତାଙ୍କ ମନ୍ତ୍ରୀଙ୍କ ନାମ ଧରଣୀଧର ନଥିଲା; କିନ୍ତୁ ପ୍ରତାପରୁଦ୍ର ଜଣେ ବିଷ୍ଣୁଭକ୍ତ ଥିବାର ଯାହା ବାଲିଗାଁ ଦାସ ଲେଖିଛନ୍ତି, ତାହା ଲୋକମୁଖରୁ ଏବଂ ସମସାମୟିକ ଭକ୍ତମଣ୍ଡଳୀରୁ ଶୁଣି ଲେଖିଥିବାପରି ମନେହୁଏ ।

ବାଲିଗାଁ ଦାସ ଗୋବିନ୍ଦ ନାମକ ଜଣେ ରାଜାଙ୍କ ନାମ ଉଲ୍ଲେଖ କରିଛନ୍ତି । ଏ ଗୋବିନ୍ଦ ନିଶ୍ଚୟ ଗୋବିନ୍ଦ ବିଦ୍ୟାଧର । ସେ ପ୍ରତାପରୁଦ୍ରଦେବଙ୍କ ସହିତ ବିଶ୍ୱାସଘାତକତା କରିଥିଲେ ମଧ୍ୟ ଜଣେ ଦୃଢ଼ମନା ଶାସକ ଥିଲେ । ତାହା ମଧ୍ୟ କବି ବାଲିଗାଁ ଦାସ ଲୋକମୁଖରୁ ଶୁଣିଥିଲେ ।

ସୁଲେମାନ କରରାନି ତେଲଙ୍ଗା ମୁକୁନ୍ଦଦେବଙ୍କ ସମୟରେ ଓଡ଼ିଶା ଆକ୍ରମଣ କରିଥିଲେ ଏବଂ ସୁଲ୍‌ତାନଙ୍କ ସେନାପତି 'କଳାପାହାଡ଼' ସାରଙ୍ଗଗଡ଼ ବାଟଦେଇ ଗୁପ୍ତରେ ଓଡ଼ିଶାରେ ପଶି ନାନା ଦେବମୂର୍ତ୍ତି ଓ ଦେବମନ୍ଦିର ଭଗ୍ନ କରିଥିଲେ । ବିଶେଷତଃ

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଅପବିତ୍ର କରିଥିଲେ । କବି ବାଲିଗାଁ ଦାସ ସେହି ଘଟଣାଟିକୁ ଲୋକମୁଖରୁ ଶୁଣିଥିଲେ ମଧ୍ୟ ସୁଲେମାନ୍ କର୍‌ରାଣିଙ୍କ ନାମମନେନରଖି ତାଙ୍କୁ 'ହାଲୋକ' ବୋଲି ଲେଖି କେବଳ କଳାପାହାଡ଼ର ଅତ୍ୟାଚାରକୁ ସୁନ୍ଦରଭାବରେ ବର୍ଣ୍ଣନା କରିଛନ୍ତି—

ହାଲୋକ ନାମେ ହରିଚନ୍ଦ୍ର । ରାଜନ ତେଲଙ୍ଗା ମୁକୁନ୍ଦ ॥
ଗଙ୍ଗାକୂଳକୁ ଯିବେ ମାରି । ଗଉଡ଼େଶ୍ୱର ଯେ ବିଚାରି ॥
ସୈନ୍ୟ ତାହାର ଯେତେ ସଙ୍ଗ । ବୋଲିବ ଓଡ଼ିଶାକୁ ଭଙ୍ଗ ॥
କଳାପାହାଡ଼ ରଣରଙ୍ଗେ । ଗୁପତେ ଆସି ସେ ସାରଙ୍ଗେ ॥
ବଳ ଆସିବେ ତାର ଘୋଟି । ପକାଇ କଳ୍ପବଟ କାଟି ॥
କ୍ଷେତ୍ରରେ କରିବ ଅନୀତ । ଦେବତା ଅପୂଜା ହୁଅନ୍ତି ॥

( ଦ୍ୱିତୀୟ ଅଧ୍ୟାୟ—୩୭-୪୨ ପଦ )

ଏହା ପରେ ଭକ୍ତକବି ବାଲିଗାଁ ଦାସ ଖୋର୍ଦ୍ଧାର ଭୋଇବଂଶ ରାଜାଙ୍କ ନାମ ଉଲ୍ଲେଖ କରିଛନ୍ତି । ସେହି ପ୍ରସଙ୍ଗରେ ସେ ଗଜପତି ରାମଚନ୍ଦ୍ରଦେବ (୧ମ)ଙ୍କ ନାମ ଲେଖି, ତାଙ୍କ ସମୟରେ ଆକ୍‌ବରଙ୍କ ସେନାପତି ମାନସିଂହଙ୍କ ଆକ୍ରମଣ ସମ୍ବନ୍ଧରେ ସୂଚନା ଦେଇଛନ୍ତି । ଗଜପତି ରାମଚନ୍ଦ୍ରଦେବ (୧ମ)ଙ୍କ ସମୟରେ ରାଜା ମାନସିଂହ ଓଡ଼ିଶା ଆକ୍ରମଣ କରିଥିଲେ । ସେ ରାଜା ରାମଚନ୍ଦ୍ରଦେବଙ୍କ ନ୍ୟାଯ୍ୟ ଦାବୀକୁ ଉପେକ୍ଷା ନ କରି ତାଙ୍କୁ 'ଟୀକା ଶିରୋପା' ଦେଇଥିଲେ । ଗଜପତି ରାମଚନ୍ଦ୍ରଦେବ ଶ୍ରୀଜଗନ୍ନାଥଦେବଙ୍କ ବ୍ରହ୍ମକୁ କୁଜଙ୍ଗରୁ ଅଣାଇ ଶ୍ରୀମନ୍ଦିରରେ ପ୍ରତିଷ୍ଠା କରାଇଥିବାରୁ 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ପଦବୀରେ ଭୂଷିତ ହୋଇଥିଲେ ।

ହରିନା ମାନସିଂହ ଆସି । ଓଡ଼ିଶା ସୁବା ପଣେ ବସି ॥
× × ×
କ୍ଷେତ୍ରରେ ରାମଚନ୍ଦ୍ରଦେବ । ତାହାକୁ ଦବନ ଦେଖିବ ॥
ଶ୍ରୀନୀଳକନ୍ଦେ ପଣିକରି । ରହିବେ ସୈନ୍ୟବଳ ପୂରି ॥
ମାନ ଯେ ସିଂହ ବିଚାରିବ । ରାମକୁ ଟୀକା ଦେଇ ଯିବ ॥

( ଦ୍ୱିତୀୟ ଅଧ୍ୟାୟ—୫୧,୫୩, ୫୪, ୫୫ ପଦ )

କିନ୍ତୁ ଐତିହାସିକ ବିବରଣୀରୁ ଜଣାଯାଏ ଯେ, ମୁକୁନ୍ଦ ହରିଚନ୍ଦନଙ୍କ ପରେ ଖ୍ରୀ: ଅ: ୧୫୬୮ରେ ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର ରମେଇ ରାଉତରାୟ ରାମଚନ୍ଦ୍ରଦେବ (୧ମ) ନାମରେ ଖୋର୍ଦ୍ଧାର ସିଂହାସନ ଅଳଂକୃତ କରିଥିଲେ । ସେତେବେଳେ ରାମଚନ୍ଦ୍ର ଦେବ ଆଖପାଖ ଅଞ୍ଚଳର ସର୍ଦ୍ଦାରମାନଙ୍କ ସମର୍ଥନରେ ଖୋର୍ଦ୍ଧାଠାରେ ସୁଦୃଢ଼ ଦୁର୍ଗ ନିର୍ମାଣ କରି ମାନସିଂହଙ୍କର ସମ୍ମୁଖୀନ ହୋଇଥିଲେ । ଶେଷକୁ ମାନସିଂହ ରାଜା ରାମଚନ୍ଦ୍ର ଦେବଙ୍କ ବୀରତ୍ୱ ସ୍ୱୀକାର କରି, ତାଙ୍କ ସହିତ ସନ୍ଧି ସ୍ଥାପନ କରିବା ସଙ୍ଗେ ସଙ୍ଗେ, ଖୋର୍ଦ୍ଧା ରାଜ୍ୟର ଅବସ୍ଥିତି ସ୍ୱୀକାର କରିଥିଲେ । ଏ ସମ୍ବନ୍ଧରେ ସମସାମୟିକ ବା ଟିକିଏ ପରବର୍ତ୍ତୀ କବି କୃଷ୍ଣଦାସ ସ୍ୱରଚିତ 'ରସବିନୋଦ'ରେ ଲେଖିଛନ୍ତି—

ଯେ ଦିନେ ମାନସିଂହ ସାହି । ଅଇଲା ଓଡ଼ିଶାକୁ ବାହି ॥
ସେ ଦିନେ ରାମଚନ୍ଦ୍ର ରାଜା । ଶୁଭେ ପାଳନ୍ତି ଜନ ପ୍ରଜା । ॥

'ମାଳସୁନ୍ଦର ଗୀତା'ର ପ୍ରଣେତା ଶେଖର ଦାସ ଏହି ଘଟଣାକୁ ଲକ୍ଷ୍ୟ କରି ଲେଖିଛନ୍ତି—

କଳାସିଂଘ ଡରେ ତହୁଁ ପଳାଇବ ଖୋରଧା କରିବ ସ୍ଥିତି ।
ପଞ୍ଚ ପାଟ ଯଦୁବଂଶ ଶେଷକୁ ସେ ନରେନ୍ଦ୍ର ହେବ ନୃପତି ?

ରାମଚନ୍ଦ୍ରଦେବଙ୍କ ସମସାମୟିକ କବି ଗୃନ୍ଦ ଦାସ ଗୋଟିଏ ପଦାବଳୀରେ ଲେଖିଛନ୍ତି—

ଅଭିନବ ଇନ୍ଦ୍ରଦ୍ୟୁମ୍ନ ଅବତାର ।
ଯୁଗେ ଯୁଗେ ରହିଲେ ଏ କୀରତି ବିସ୍ତାର ॥
ରାମଚନ୍ଦ୍ର ନରପତି ଦୁର୍ଲଭ କୀର୍ତ୍ତି ଏ ।
ଗୃନ୍ଦ ଭଣେ ଇହ ପରଲୋକ ଗତିଏ ॥

ରାମଚନ୍ଦ୍ର ଦେବ ଖୋର୍ଦ୍ଧାରେ ଅଭିଷିକ୍ତ ହୋଇ, ମୋଗଲ ବାଦ୍‌ଶାହ ଆକବରଙ୍କ ପ୍ରିୟପାତ୍ର ହେବା ସଙ୍ଗେ ସଙ୍ଗେ ମୋଗଲମାନଙ୍କ ଦ୍ୱାରା ବିଧ୍ୱସ୍ତ କଟକ ଜିଲ୍ଲାରେ ଅବସ୍ଥିତ ଷୋଳ ଶାସନ ପରିବର୍ତ୍ତେ ପୁରୀ ଜିଲ୍ଲାରେ 'ଷୋଳଶାସନ' ବସାଇଥିବାର ଐତିହାସିକ ବିବରଣୀ ମିଳେ । (୧)

କବି ବାଲିଗାଁ ଦାସ ରାଜା ଗଜପତି ରାମଚନ୍ଦ୍ରଦେବଙ୍କ ଦ୍ୱାରା ଷୋଳଶାସନ ପ୍ରତିଷ୍ଠାର ବିବରଣୀ ସ୍ୱପୁସ୍ତକରେ ଉଲ୍ଲେଖ କରି ଲେଖିଛନ୍ତି—

ବସାଇ ଷୋଳ ଯେ ଶାସନ । ପରଜା ପାଳିବେ ରାଜନ ॥
ଖୋରଧା କଟକ ଯେ କରି । ଦେବତା ବିପ୍ରଜନେ ପାଳି ॥
(ଦ୍ୱିତୀୟ ଅଧ୍ୟାୟ—୭୩, ୭୪ ପଦ)

ବାଲିଗାଁ ଦାସ ରାଜା ରାମଚନ୍ଦ୍ର ଦେବଙ୍କ ଅନ୍ତେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଖୋର୍ଦ୍ଧା ସିଂହାସନରେ ବସିଥିବା ବିଷୟ ଉଲ୍ଲେଖ କରିଛନ୍ତି । କବି ଆହୁରି ମଧ୍ୟ ଲେଖିଛନ୍ତି ଯେ, ପୁରୁଷୋତ୍ତମ ଦେବ ପିତାଙ୍କପରି ଅତ୍ୟନ୍ତ ଦୃଢ଼ମନା ଥିଲେ ଏବଂ ଶ୍ରୀଜଗନ୍ନାଥଙ୍କ ସମ୍ମାନାର୍ଥେ ବହୁ କାର୍ଯ୍ୟ କରିଥିଲେ । ଐତିହାସିକ ବିବରଣୀରେ ମଧ୍ୟ ଏହାକୁ ସମର୍ଥନ କରାଯାଇଛି । ସେଥିରୁ ଜଣାଯାଏ ଯେ, ରାଜା ଗଜପତି ରାମଚନ୍ଦ୍ର ଦେବଙ୍କ ଅନ୍ତେ ତାଙ୍କ ପୁତ୍ର ଖ୍ରୀ: ଅ: ୧୬୦୦-୧୬୨୧ ପର୍ଯ୍ୟନ୍ତ ଖୋର୍ଦ୍ଧା ରାଜସିଂହାସନ ମଣ୍ଡନ କରିଥିଲେ । ତାଙ୍କ ସମୟରେ ମୋଗଲ ସୁବାଦାର ହାସିମ୍ ଖାଁ ଓ କେଶୋଦାସ ମାରୁ ନାମକ ଜନୈକ ହିନ୍ଦୁ ରାଜପୁତ ପୁରୁଷୋତ୍ତମ ଦେବଙ୍କ ବିରୁଦ୍ଧରେ ଚକ୍ରାନ୍ତ କରି ଶ୍ରୀମନ୍ଦିର ଆକ୍ରମଣ

---

(୧) ଖୁରୁଧା ଇତିହାସ—ଲେ: ଶ୍ରୀ କେଦାରନାଥ ମହାପାତ୍ର—(ପୃ-୧୭,୧୮) ।

କରିଥିଲେ । ଶ୍ରୀମନ୍ଦିର ତଥା ବଡ଼ଦେଉଳ ସୁରକ୍ଷା ଲାଗି ଗଜପତି ପୁରୁଷୋତ୍ତମ ଖୋରଧାର ବୀର ପାଇକବାହିନୀ ସାହାଯ୍ୟରେ ମୋଗଲମାନଙ୍କର ସମ୍ମୁଖୀନ ହୋଇଥିଲେ । ସେ ଏହିପରି କେତେକ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ କରି ଅଠେଇଶ ଅଙ୍କ ଭୋଗ କରି ଇହଧାମ ତ୍ୟାଗ କରିଥିଲେ । ଏହି ଘଟଣାଟିକୁ ଭକ୍ତକବି ବାଲିଗାଁ ଦାସ ସଂକ୍ଷେପରେ ପ୍ରକାଶ କରି ଲେଖିଛନ୍ତି—

ରାମ ଯେ ଚନ୍ଦ୍ରର ତନୁଜା । ପୁରୁଷୋତ୍ତମ ଦେବ ରାଜା ॥
ତାହାର ପାଦମାନେ ଥିବେ । ବଳେଣ କାର୍ଯ୍ୟ କରି ଯିବେ ॥
ପାଦକୁ ଧରିଇ ରାଜନ । ଅଠାଇଶରେ ସେ ଅନ୍ତ୍ୟାନ ॥

କବି ବାଲିଗାଁ ଦାସଙ୍କ ବୋଧହୁଏ କେଶୋଦାସ ମାରୁ ଓ ହାସିମ୍ ଖାଁଙ୍କ କାର୍ଯ୍ୟ-କଳାପକୁ ଲକ୍ଷ୍ୟକରି ଉପରିଲିଖିତମତେ ମନ୍ତବ୍ୟ ପ୍ରକାଶ କରିଛନ୍ତି ।

ଭକ୍ତକବି ଦାସିଆ ବାଉରି 'ଭାଗବତ'ର ଦ୍ୱିତୀୟ ଅଧ୍ୟାୟର ପରବର୍ତ୍ତୀ ପଦରେ ଲେଖିଛନ୍ତି ଯେ, ପୁରୁଷୋତ୍ତମଙ୍କ ପରେ ତାଙ୍କ ପୁତ୍ର ନରସିଂହ ଦେବ ଖୋରଧା ରାଜ-ସିଂହାସନ ଅଳଂକୃତ କରିଥିଲେ । ତାଙ୍କର ପୁତ୍ର ସନ୍ତାନ ନଥିବାରୁ ସେ ସନ୍ନ୍ୟାସ ଜୀବନ ଧାରଣକରି ପୁରୀରେ ବସବାସ କରୁଥିଲେ । ତାଙ୍କର ସରଳ ସ୍ୱଭାବ ତଥା କୁଟନୀତିବହୀନ ଜୀବନର ସୁଯୋଗ ନେଇ ମୋଗଲମାନେ ତାଙ୍କ ମୁଣ୍ଡ କାଟିଦେଇଥିଲେ; କିନ୍ତୁ ତାଙ୍କର ରାଜତ୍ୱକାଳ 'ଅପାରଧନ' ହୋଇଥିଲା ।

ତଦନ୍ତେ ନରସିଂହ ଦେବ । ଅପାର ଧନ ରାଜା ହେବ ॥
ରାଜା ଅପୁତ୍ରୀ ହୋଇ କରି । ସନ୍ନ୍ୟାସୀ ରୂପ ଥିବ ଧରି ॥
କ୍ଷେତ୍ର ଭିତରେ ରାଜା ଥିବ । ମୁଗୁଲ ମୁଣ୍ଡ କାଟିନେବ ॥
(ଦ୍ୱିତୀୟ ଅଧ୍ୟାୟ—୬୨, ୭୦, ୭୧ ପଦ)

ଭକ୍ତକବି ଦାସିଆ ବାଉରିଙ୍କ ପ୍ରଦତ୍ତ ବିବରଣୀ ଇତିହାସ ଓ ସମସାମୟିକ ସାହିତ୍ୟ ସହିତ ଏପରି ଭାବରେ ମିଶିଯାଉଛି ଯେ, ମନେହୁଏ, କବି ସେହି ସମୟରେ ଏସବୁ ଘଟଣା ପ୍ରତ୍ୟକ୍ଷ ଅନୁଭବ କରିଥିଲେ । ବାଲିଗାଁ ଦାସଙ୍କ ବିବରଣୀକୁ କବି କୃଷ୍ଣଦାସ ତାଙ୍କ ରଚିତ 'ରସବିନୋଦ' ପୁସ୍ତକରେ ଲେଖିଛନ୍ତି—

ତାହାଙ୍କଠାରୁ ଯେ ତନୁଜ । ନୃସିଂହ ଦେବ ମହାରାଜ ॥
× × ×
ତହୁଁ ପୁରୁଷୋତ୍ତମ ଗଲେ । ପ୍ରଭୁଙ୍କ ସେବା କରିଥିଲେ ॥
ଏମନ୍ତେ ସଙ୍ଗେ ଖାଁ ପଠାଣ । ଜାଣିଲା ଓଡ଼ିଶା ଭିଆଣ ॥
× × ×
ଗୁପତେ କଲେ ସେ ବିଗ୍ରହ । ବୋଇଲେ ନୃପତିକି ମାର ॥
ଧନ ଭଣ୍ଡାର ନାହିଁ ଦେଇ । ଥାନରେ ଭେଟାଇଲେ ନେଇ ॥

ପୁରୁଷୋତ୍ତମେ ରାଜା ଥିଲେ । ଅଇର ନେଇ ଭେଟାଇଲେ ॥
ତେଣୁ ସେ କୋପଭରେ ଆସି । ରାଜାଙ୍କୁ ପକାଇଲା ନାଶି ॥

ଏହି ଘଟଣା ମଧ୍ୟ ଶ୍ରୀମନ୍ଦିରରେ ଲିଖିତ 'ମାଦଳାପାଞ୍ଜି' ଦ୍ୱାରା ଅବିକଳ ସମର୍ଥିତ ହୁଏ ।

"ଏ ମହାରାଜାଙ୍କ ୩୬ ଅଙ୍କ ମିଥୁନ ୭ଦିନ ରାଜ ପାହିବାକୁ ନବାବ ମତମଦ ଖାଁର ଅମର ଫତେ ଖାଁ ଆସି ଶ୍ରୀପୁରୁଷୋତ୍ତମ ଦକ୍ଷିଣ ପାରୁଶ ନଅରେ ରାଜାଙ୍କ ଅନ୍ତଃପୁର ରାଣୀ ପିତାମହଙ୍କୁ ସାଙ୍ଗ କରି ରାଜା ଠାକୁରଙ୍କ ମୁଣ୍ଡ କାଟି ଦେଲା । ଶ୍ରୀନଅର ଦ୍ରବ୍ୟଯାକ ନେଲା । ପରମେଶ୍ୱରଙ୍କ ଭଣ୍ଡାର ସବୁ ନେଲା ।" (୧)

ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ 'ଖୋର୍ଦ୍ଧା ଇତିହାସ'ରୁ ଜଣାଯାଏ ଯେ, ମହମ୍ମଦ ଜମାନ୍‌ଙ୍କ ପରେ ମୁତାକ୍ୱାଦ୍ ଖାଁ ଦ୍ୱିତୀୟବାର ଓଡ଼ିଶାର ସୁବାଦାର୍ ହୋଇ-ଥିଲେ (୨୧-୧୧-୧୬୪୫ରୁ ୨୬-୭-୧୬୪୮) । ସେ ଗଜପତି ନରସିଂହ ଦେବଙ୍କୁ ମରାଇଥିବା ଖାନ୍-ଇ-ଦୁରାନ୍ ୧୬୬୧ରେ ଦିଲ୍ଲୀ ଦରବାରକୁ ଲେଖିଥିବା ଏକ ପତ୍ରରୁ ଜଣାଯାଏ—"When the Late Mutaquad Khan was Subahdar he slew Narasingh Dev and made his nephew Gangadhara Rajah." (୨)

ରାଜା ନରସିଂହ ଦେବଙ୍କ ପରେ ଓଡ଼ିଶା ଗଜପତି ସିଂହାସନରେ ମାତ୍ର ଅଳ୍ପଦିନ ପାଇଁ ଗଙ୍ଗାଧର ଦେବ ଆରୋହଣ କରିଥିଲେ । ଗଙ୍ଗାଧର ଦେବ ସୁବାଦାର୍ ମୁତାକ୍ୱାଦ୍ ଖାଁଙ୍କର ପ୍ରିୟପାତ୍ର ଥିଲେ; ତେଣୁ ନରସିଂହ ଦେବଙ୍କ ହତ୍ୟା ପରେ ମୋଗଲ ସୁବେଦାର୍ ଗଙ୍ଗାଧର ଦେବଙ୍କୁ ଖୋର୍ଦ୍ଧା ସିଂହାସନରେ ବସାଇଥିବାର ଜଣାଯାଏ । ଭକ୍ତକବି ବାଲିଗାଁ ଦାସ ଗଙ୍ଗାଧର ଦେବଙ୍କ ସମ୍ବନ୍ଧରେ ଲେଖିଛନ୍ତି—

ତଦନ୍ତେ ଗଙ୍ଗାଧର ଦେବ । ଅଳପ ଦିନ ରାଜା ହେବ ॥
ଛମାସ ପନ୍ଦର ଯେ ଦିନ । ସେ ରାଜା ହୋଇବ ଅଭ୍ୟାନ ॥

କବି ବାଲିଗାଁ ଦାସଙ୍କ ପ୍ରଦତ୍ତ ବୃତ୍ତାନ୍ତ 'ମାଦଳାପାଞ୍ଜି' ଦ୍ୱାରା ସମର୍ଥିତ ହେଉଛି ।

"ଏଥି ଉତ୍ତାରୁ ରାଜା ହୋଇଲେ ନରସିଂହ ଦେବଙ୍କ ଭାଇ ଗୋକୁଳ ରାଏଙ୍କ ପୁଅ ଗଙ୍ଗାଧର ଦେବ ମହାରାଜା । ଏ ରାଜ୍ୟ ଭୋଗକଲେ ୩ ମାସ ୨୧ ଦିନ ।"

କିନ୍ତୁ ବାଲିଗାଁ ଦାସ, ଗଙ୍ଗାଧର ଦେବ ଛଅମାସ ପନ୍ଦରଦିନ ରାଜା ହେବାର ସୂଚନା ଦେଇଥିବା ସ୍ଥଳେ, 'ମାଦଳାପାଞ୍ଜି' ତାଙ୍କୁ ୩ ମାସ ୨୧ ଦିନ ରାଜତ୍ୱ କରିଥିବାର ବିବରଣୀ

(୧) ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ—ପ୍ରାଚୀ ସଂସ୍କରଣ—ପୃ. ୨୯

(୨) ଖୁରୁଧା ଇତିହାସ—ପୃ. ୭୬

ଦେଇଛନ୍ତି । ଅନ୍ୟ ଗୋଟିଏ 'ମାଦଳାପାଞ୍ଜି' ଅନୁସାରେ ଗଙ୍ଗାଧର ଦେବ ୧ବର୍ଷ ଭୋଗ କରିଥିଲେ ବୋଲି ଜଣାଯାଏ । (୧)

ଏଠାରେ ବିଶେଷ ପ୍ରଣିଧାନର ଯୋଗ୍ୟ—ମନ୍ଦିରରେ ଲେଖାଯାଇଥିବା 'ମାଦଳା-ପାଞ୍ଜି'ର ବିବରଣୀ ସତ୍ୟ କିମ୍ବା ବାଲିଗାଁ ଦାସଙ୍କ ବିବରଣୀ ସତ୍ୟ ? କିନ୍ତୁ ଆଲୋଚନାରୁ ଜଣାଯାଏ ଯେ, ଯଦି ଗଙ୍ଗାଧର ଅଧିକ କାଳ ରାଜତ୍ୱ କରିଥାଆନ୍ତେ, ତେବେ ସେ ନିଶ୍ଚୟ ଦାନପତ୍ର ପ୍ରଭୃତି ଦ୍ୱାରା ନିଜ ରାଜତ୍ୱ ସମୟକୁ ସମୁଜ୍ଜ୍ୱଳ କରିଥାଆନ୍ତେ । ତେଣୁ ସେ ନିଶ୍ଚୟ ୩ ମାସ କିମ୍ବା ୭ ମାସ ରାଜତ୍ୱ କରିଥିବା ସମୀଚୀନ ।

ଗଙ୍ଗାଧର ଦେବଙ୍କ ପରେ ବଳଭଦ୍ର ଦେବ ଖୋର୍ଦ୍ଧା ଗଜପତି ସିଂହାସନରେ ଆରୋହଣ କରିଥିଲେ । ସେହି ଘଟଣାଟି 'ମାଦଳାପାଞ୍ଜି'ରେ ନିମ୍ନଲିଖିତମତେ ଲେଖାଯାଇଛି—

"ଏହାଙ୍କ ଉତ୍ତାରୁ ବଳଭଦ୍ର ଦେବେ ରାଜା ହୋଇଲେ । ଏ ରାଜାଙ୍କ ୪ ଅଙ୍କରେ ବିଦରୁ ଏକ ଦନ୍ତା ଗୋପାଳ ଦାସ ହାଥୀ ଅଇଲା । ଶ୍ରୀପୁରୁଷୋତ୍ତମ ଠାରୁ ମାହାନୁଆଜ ଖାଁ ଧରି ଭିଲି ନେଲା । ଏ ବଳଭଦ୍ରପୁର ଶାସନ ଦାନ ଦେଲେ । ଏ ରାଜା କଲେ ୯ ବର୍ଷ ।"

(ମାଦଳାପାଞ୍ଜି ଓ ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ—ପ୍ରାଚୀ ସଂସ୍କରଣ)

ରାଜା ବଳଭଦ୍ରଦେବ ମଧ୍ୟ ବେଶିଦିନ ରାଜା ହୋଇ ନଥିବାରୁ ତାଙ୍କ ରାଜତ୍ୱର ବିଶେଷ ଉଲ୍ଲେଖନୀୟ ଘଟଣା ସମ୍ବନ୍ଧରେ ଭକ୍ତକବି ଦାସିଆ ଉଲ୍ଲେଖ କରିନାହାନ୍ତି ।

ଉଭୟ ମାଦଳାପାଞ୍ଜି ଓ ଭକ୍ତ ବାଲିଗାଁ ଦାସଙ୍କ ବିବରଣୀରୁ ଜଣାଯାଏ ଯେ, ବଳଭଦ୍ର ଦେବଙ୍କ ପରେ ମୁକୁନ୍ଦଦେବ ଖୋର୍ଦ୍ଧା ସିଂହାସନରେ ଅଧିଷ୍ଠିତ ହୋଇଥିଲେ । ଭକ୍ତ ଦାସିଆଙ୍କ ଅନୁସାରେ ମୁକୁନ୍ଦଦେବ ଦେଶର ଅରାଜକତା ଦୂରକରିଥିଲେ ।

ତଦନ୍ତେ ମୁକୁନ୍ଦ ଯେ ଦେବ । ଖଣ୍ଡ କୁଳକୁ ବିନାଶିବ ॥

ମାଦଳାପାଞ୍ଜିର ବିବରଣୀରୁ ଜଣାଯାଏ—ଗଜପତି ବଳଭଦ୍ର ଦେବଙ୍କ ପରେ ଖୋରଧା ସିଂହାସନର ଉତ୍ତରାଧିକାର ସମ୍ପର୍କରେ ବିବାଦ ଉପୁଜିଲା ଏବଂ ଗଙ୍ଗାଧରଦେବ ଓ କପିଳ ଭ୍ରମରବର ନାମକ ଦୁଇଜଣ ବ୍ୟକ୍ତି କଚ୍ଛଦିନ ଲାଗି, ଜଣକ ପରେ ଜଣେ, ସିଂହାସନ ଆରୋହଣ କରିବା ପରେ, ମୁକୁନ୍ଦଦେବ ଦେଶର ଅରାଜକତା ଦୂର କରିବା ସଙ୍ଗେ ସଙ୍ଗେ ସେ ସମୟରେ ହୋଇଥିବା ଏକ ଭୟଙ୍କର ଦୁର୍ଭିକ୍ଷର ସମ୍ମୁଖୀନ ହୋଇଥିଲେ । 'ପାଞ୍ଜି'ର ବିବରଣୀରୁ ଜଣାଯାଏ—ସେ ସମୟରେ ଧାନ ଭରଣକୁ ୪୫ କାହାଣ କଉଡ଼ି ହୋଇଥିଲା ଏବଂ ପେଟବିକଳରେ ମଣିଷମାଂସ ମଣିଷ ଖାଇଥିଲେ; ଅର୍ଥାତ୍ ସେହି କରାଳ ଦୁର୍ଭିକ୍ଷ ଦେଶର ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା । ଠିକ୍ ଏହି ଦୁର୍ଦ୍ଦିନର ସୁଯୋଗ ନେଇ ଅବଦୁଲ୍ ନସର ଖାଁ ଶ୍ରୀମନ୍ଦିର ଆକ୍ରମଣ ଉଦ୍ଦେଶ୍ୟରେ ପିପିଲି ପର୍ଯ୍ୟନ୍ତ ମାଡ଼ି

(୧) ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ ( ପ୍ରାଚୀ )—୬୯ ପୃଷ୍ଠା

ଆସିଥିଲେ । ରାଜା ମୁକୁନ୍ଦଦେବ ଏ ଖବର ପାଇବା ମାତ୍ରେ ଦାଣ୍ଡମୁକୁନ୍ଦପୁରଠାରେ ଆସି ପହଞ୍ଚିଲେ ଏବଂ ନସର୍ ଖାଁଙ୍କ ସହିତ ମୈତ୍ରୀସମ୍ପର୍କ ସ୍ଥାପନକରି ତାଙ୍କୁ କଟକ ଫେରାଇଦେଲେ ।

"ଏ ଉତ୍ତାରୁ ଏହାଙ୍କ ପୁଅ ମୁକୁନ୍ଦଦେବ ମହାରାଜା ହୋଇଲେ । ଏ ମହାରାଜାଙ୍କ ରାଜ୍ୟ କରିବା ଭିତରେ ମାହାଲିଆ ଗଙ୍ଗାଧର ଦେବ ରାଜା ହୋଇଲେ ମା୧।୧୭ ଦିନ । ଏ ଧବଳେଶ୍ୱରଙ୍କଠାରେ ମାରିଗଲେ । ଏଥି ଭିତରେ ମୁକୁନ୍ଦଦେବ ମହାରାଜାଙ୍କ ସାନଭାଇ କପିଳ ଭ୍ରମରବର ରାଏ ରାଜା ହୋଇଲେ ବ୧।୭ ମାସ । ଏ ଉତ୍ତାରେ ଏହାଙ୍କୁ ମୁକୁନ୍ଦଦେବ ଧରାଇ ରଖିଲେ । ଏ ମହାରାଜାଙ୍କ ୧୮ ଅଙ୍କେ ମହରଗ ହୋଇଲା । ଧାନ ଭରଣକୁ ୪୫ କାହାଣ ହୋଇଥିଲା । ମନୁଷ ମାଂସ ମନୁଷ ଖାଇଲେ । ଏ ମହାରାଜାଙ୍କ ୩୮ ଅଙ୍କେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଅବଳ (?) କରିବା ନିମନ୍ତେ ନବାବ୍ ଅବଦୁଲ୍ ନସର ଖାଁ ପିପିଲି ଯାଏ ଅଇଲା । ଏହାଙ୍କ ସହିତ ରାଜା ଲୁଟିମ୍ବ ଘେନି ଦାଣ୍ଡମୁକୁନ୍ଦପୁର ନଅରେ ବିଜେକଲେ ।" (ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ—ପୃ. ୩୦)

ଭକ୍ତ ବାଲିଗାଁ ଦାସଙ୍କ 'ଆଗତ ଭବିଷ୍ୟ'ର ପରବର୍ତ୍ତୀ ପଦ୍ୟାବଳୀରୁ ଜଣାଯାଏ ଯେ ମୁକୁନ୍ଦଦେବଙ୍କ ପରେ ତାଙ୍କ ପୁତ୍ର ଦିବ୍ୟସିଂହ ଦେବ ରାଜସିଂହାସନ ଆରୋହଣ କରିବା ପରଠାରୁ ମୋଗଲମାନଙ୍କ ସହିତ ବରାବର ଯୁଦ୍ଧ କରି, ବହୁକାଳ ଅଙ୍କ ଭୋଗ କରିଥିଲେ । ଏ ରାଜାଙ୍କ ସାତ ଅଙ୍କଠାରେ 'ଗୋଳ' ଅର୍ଥାତ୍ ମୋଗଲ ଆକ୍ରମଣ ପ୍ରଚଣ୍ଡଭାବରେ ହୋଇଥିଲା; କିନ୍ତୁ ରାଜା ଦିବ୍ୟସିଂହ ଦେବ ଓଡ଼ିଆ ଜାତିର ଗୌରବ, ଓଡ଼ିଆ ସଂସ୍କୃତିର ମହତ୍ତ୍ୱମଣି ଶ୍ରୀଜଗନ୍ନାଥ ଦେବଙ୍କ ସମ୍ମାନ ରକ୍ଷା ଲାଗି ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଥିଲେ ।

ଦିବ୍ୟ ଯେ ସିଂହ ଦେବ ରାଜା । ମୁକୁନ୍ଦଦେବର ତନୁଜା ॥
ସେ ରାଜା ସାତ ଅଙ୍କ ଠାର । ଗୋଳ ଯେ ହୋଇବ ଅପାର ॥
କଳି ଯେ ଗ୍ରାସିବ ତୁରିତ । ଚକ୍ର ପଡ଼ିବ ନିର୍ଘାତ ॥

ବାଲିଗାଁ ଦାସଙ୍କ ବିବରଣୀକୁ ପ୍ରତ୍ୟକ୍ଷରେ ନହେଲେ ମଧ୍ୟ ପରୋକ୍ଷରେ 'ମାଦଳାପାଞ୍ଜି'ରେ ସମର୍ଥନ କରାଯାଇଛି । ସେହି ବିବରଣୀରୁ ଜଣାଯାଏ ଯେ, ଦିବ୍ୟସିଂହଙ୍କ ସାତ ଅଙ୍କରେ ଶ୍ରୀଜଗନ୍ନାଥ ମନ୍ଦିର ଉପରେ ମୋଗଲମାନଙ୍କ ଆକ୍ରମଣ ହୋଇଥିଲା ଏବଂ ପଣ୍ଡାମାନେ ମହାପ୍ରଭୁଙ୍କୁ ଲୁଚାଇ ରଖି ସେବାପୂଜା ବନ୍ଦ କରିଦେଲେ । ମୋଗଲମାନେ ଶ୍ରୀମନ୍ଦିର ମଧ୍ୟରେ ପ୍ରବେଶ କରି ଗଜପତି ରାଜାଙ୍କ କୌଶଳରେ ନିର୍ମିତ କାଠର ଏକ ନୂତନ ଜଗନ୍ନାଥ ମୂର୍ତ୍ତିକୁ ନେଇଯାଇ ତୃପ୍ତହେଲେ ।

"ଏ ମହାରାଜାଙ୍କ ଅ ୭ ଙ୍କ ବୃଷଭ ଦି୯ ନ ମୁଗଲ ଗୋଳରେ ଏଦିନ ପଳାଉଣି ନିମନ୍ତେ ଶ୍ରୀଜ ଉନପ୍ରହରଠାରେ ପରମେଶ୍ୱରରେ ଚତୁର୍ଦ୍ଧା ମୂରତି ପହଣ୍ଡି ବିଜେ କଲେ । ଭିତର ବେଢ଼ାରେ ବିମ୍ବଳାଈଙ୍କ ପଛଆଡ଼ ବେଢ଼ାରେ ବିଜେକଲେ । ଦକ୍ଷିଣଘରୁ ଦେବତା-ମାନେ ପୋକଲଗଡ଼କୁ ବିଜେ କଲେ × × × । ଚନ୍ଦନପୁର ନଅରକୁ ବିଜେ କଲେ । ବୃଷଭ ଦି୧୯ନ ହରଣ ଏକାଦଶୀ ଦିନ ପାତଶା ଆଉରଙ୍ଗସାହାଙ୍କ ନବାବ ଏକରାମ୍ ଖାଁ

ଏହାଙ୍କଠାରୁ ଅଇଲା । ଏହା ଶୁଣି ମରମସ୍ତ ଖାଁ ଜମାଉଲା ଏ ସଙ୍ଗତେ ଇମାମ୍ କୋଲି ଅସୁଆର ଗୋଟିଂଟା ଯେନ ରାଜା ଦିବ୍ୟସିଂହ ଦେବେ ବାରୁ ଲାଗି ହୋଇଥାଇ ସିଂହଦ୍ୱାର ଗୁମୁଟ ଭାଙ୍ଗିଲେ । ଭୋଗମଣ୍ଡପରୁ ଚାନ ନେଲେ । କାଠର ଜଗନ୍ନାଥ ପ୍ରତିମାକୁ ମୁଗଲେ ନେଲେ । × × × ଏ ବନ୍ଦି ଚନ୍ଦନଯାତ୍ରା ନୋହିଲେ । ଏ ବନ୍ଦି ରୁକ୍ମିଣୀହରଣ ନୋହିଲେ । ଏକାଦଶୀ ମହାଦୀପ ନୋହିଲେ । ବଡ଼ଯାତ ନୋହିଲେ । × × × ସବୁ ଲୋକମାନଙ୍କ ଘରଦ୍ୱାର ଭାଙ୍ଗିଲା । ଗାଈ ମଇଁଷି ଅନେକ ମଲେ । ମନଷ ମଲେ । ଅଂଙ୍କରେ ମହାରଗ କଲା । ଧାନ ଭରଣକେ ୨୫ କାହାଣ ହୋଇଲା । ମନଷ ମାଂଅସ ମନଷ ଖାଇଲା । ଅ୨ଂଙ୍କେ ନବାବ ସୁଜା ଖାଁ ସଙ୍ଗେ ଗୋଲକରି ଲଢ଼ାଇ କଲେ ।''

ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ ଖୁର୍ଦ୍ଧା ଇତିହାସରେ ପ୍ରଦତ୍ତ ବିବରଣୀରୁ ଜଣାଯାଏ, ରାଜା ମୁକୁନ୍ଦଦେବଙ୍କ ସମୟରେ ସୁବାଦାର ଆଗ୍ରନସର ଖାଁ ସାରଳା ପୀଠ ଓ ବିରଜା ପୀଠ ଧ୍ୱଂସ କରିଥିଲେ; କିନ୍ତୁ ସେ ଶ୍ରୀଜଗନ୍ନାଥ ମନ୍ଦିର ଆକ୍ରମଣ କରିପାରି ନଥିଲେ । ରାଜା ଦିବ୍ୟସିଂହ ଦେବଙ୍କ ଅମଳରେ ଦିଲ୍ଲୀ ବାଦଶାହ ଔରଙ୍ଗଜେବଙ୍କ ଆଦେଶକ୍ରମେ ସୁବାଦାର ନବାବ୍ ଏକରାର ଖାଁ ଶ୍ରୀଜଗନ୍ନାଥ ମନ୍ଦିର ଓ ବିଗ୍ରହକୁ ଧ୍ୱଂସ କରିବାଲାଗି ଦୃଢ଼ପ୍ରତିଜ୍ଞ ହୋଇଥିଲେ । ପ୍ରବଳ ମୋଗଲ ବାହିନୀର ପ୍ରଚଣ୍ଡ ଆକ୍ରମଣ ଫଳରେ ଖୁର୍ଦ୍ଧା ରାଜା ଦିବ୍ୟସିଂହ ଦେବ ନିତାନ୍ତ ଅସହାୟ ହୋଇପଡ଼ିଥିଲେ; କିନ୍ତୁ ସେ ଶ୍ରୀଜଗନ୍ନାଥ ଓ ଓଡ଼ିଆ ଜାତିର ଗୌରବ ରକ୍ଷା ନିମିତ୍ତ ଅନେକ କୌଶଳ କରିଥିଲେ । ରାଜା ଦିବ୍ୟସିଂହ ଦେବ ପଣ୍ଡାମାନଙ୍କ ସାହାଯ୍ୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଅନ୍ୟତ୍ର ପଠାଇଦେଇ, ତାଙ୍କ ସ୍ଥାନରେ ନୂତନ ମୂର୍ତ୍ତି ନିର୍ମାଣ କରି ରଖାଇଦେଲେ ଏବଂ ସେହି ମୂର୍ତ୍ତି ମୋଗଲମାନଙ୍କ ହାତରେ ଅର୍ପଣ କରିବାରୁ ମୋଗଲମାନେ ସନ୍ତୁଷ୍ଟ ହୋଇଥିଲେ । କେବଳ ସେତିକି ନୁହେଁ, ସିଂହଦ୍ୱାର ଉପରେ ଥିବା ରକ୍ଷସମୂର୍ତ୍ତି ଓ ଗୁମୁଟକୁ ଭାଙ୍ଗି ମୋଗଲମାନଙ୍କ ମନସ୍କାମନା ପୂର୍ଣ୍ଣ କରିଥିଲେ । ରାଜା ଦିବ୍ୟସିଂହ ଦେବଙ୍କ କୌଶଳ ଫଳରେ ହିନ୍ଦୁଜଗତର ଆରାଧ୍ୟ ଓ ଗୌରବ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ରକ୍ଷା କରିବା ଲାଗି ଦିବ୍ୟସିଂହ ଦେବ କୌଣସିମତେ ସକ୍ଷମ ହୋଇ ପାରିଥିଲେ । ଦିବ୍ୟସିଂହ ଦେବ ନିଜର ମାନସମ୍ମାନ, ପଦମର୍ଯ୍ୟାଦା, ଏପରିକି ପ୍ରାଣ ପ୍ରତି ଭ୍ରୂକ୍ଷେପ ନକରି ଯେଉଁ ବିପଦପୂର୍ଣ୍ଣ କାର୍ଯ୍ୟ କଲେ, ତାହା କମ୍ ସାହସର କଥା ନୁହେଁ । ସେ ଜାଣିଥିଲେ, ଶ୍ରୀଜଗନ୍ନାଥ ହେଉଛନ୍ତି ଓଡ଼ିଆ ଜାତିର ହୃତ୍‌ପିଣ୍ଡ । ଯବନମାନଙ୍କ ଦ୍ୱାରା ଯଦି ସେ ବିଗ୍ରହ ଅପବିତ୍ର ହୋଇଯାଆନ୍ତା; ତା'ହେଲେ କାଳକାଳକୁ ଏ ଜାତିର ମେରୁଦଣ୍ଡ ଭାଙ୍ଗିପଡ଼ନ୍ତା । ତେଣୁ ସେ ପ୍ରାଣ ବିନିମୟରେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ସୁରକ୍ଷା ଲାଗି ଯତ୍ନବାନ୍ ହୋଇଥିଲେ ।

ଏ ଘଟଣା ସର୍ବସାଧାରଣରେ ଅଗୋଚର ନଥିଲା । କବି ବାଲିଗାଁ ଦାସ ପୁରୀର ଅତି ନିକଟରେ ଥିବାରୁ ଏହା ତାଙ୍କର କର୍ଣ୍ଣଗୋଚର ହୋଇଥିବା ଅସମ୍ଭବ ନୁହେଁ । ତେଣୁ ସେ

ସ୍ୱରଚିତ 'ଆଗତ ଭବିଷ୍ୟ'ରେ ସେ ସମ୍ବନ୍ଧରେ ସୂଚନା ଦେଇଛନ୍ତି । 'ଆଗତ ଭବିଷ୍ୟ'ରେ ଥିବା ଦିବ୍ୟସିଂହ ଦେବଙ୍କ ଅଙ୍କ ଓ ମାଦଳାପାଞ୍ଜିରେ ବର୍ଣ୍ଣିତ ଅଙ୍କର ଘଟଣାବଳୀ ସହିତ ସାମଞ୍ଜସ୍ୟ ଥିବାରୁ ଭକ୍ତକବିଙ୍କ ବିବରଣୀ ଗ୍ରହଣୀୟ ବୋଲି ମନେହୁଏ, କିନ୍ତୁ ବାଲିଗାଁ ଦାସଙ୍କ ପୁସ୍ତକରେ ବର୍ଣ୍ଣିତ—

"ଧର୍ମାର୍ଥ କରିବ ରାଜନ । ବଳେ କରିବ ସୁରାପାନ ।।"

ଘଟଣାର କୌଣସି ପ୍ରମାଣ ମିଳେନାହିଁ । ବରଂ ମାଦଳାପାଞ୍ଜିର ବିବରଣୀରୁ ଜଣାଯାଏ, ରାଜା ଦିବ୍ୟସିଂହ ଦେବ ଜଣେ ମହାନ୍ ସାହସୀ, କୌଶଳୀ ଓ ଜାତୀୟ ଗୌରବର ପ୍ରତୀକ ଥିଲେ । ଭକ୍ତକବିଙ୍କ ବର୍ଣ୍ଣିତ ବିବରଣୀ ଅନ୍ୟ କୌଣସି ସୂତ୍ରରୁ ସମର୍ଥିତ ହୋଇନଥିବାରୁ ଏ ସମ୍ବନ୍ଧରେ ବିଶେଷ ଆଲୋଚନା ଅସମୀଚୀନ ବୋଲି ମନେହୁଏ ।

'ମାଦଳାପାଞ୍ଜି' ଓ ବାଲିଗାଁ ଦାସଙ୍କ 'ଭାଗବତ' ଉଭୟ ପୁସ୍ତକରୁ ଜଣାଯାଏ ଯେ, ଦିବ୍ୟସିଂହ ଦେବଙ୍କ ପରେ ହରେକୃଷ୍ଣ ଦେବ ରାଜା ହୋଇଥିଲେ । ସେ ମାତ୍ର ଅଙ୍କ ଭୋଗକରି ଇହଧାମ ତ୍ୟାଗ କରିଥିଲେ । ତାଙ୍କ ସମୟର ଉଲ୍ଲେଖଯୋଗ୍ୟ ଘଟଣା ମଧ୍ୟରେ ଶ୍ରୀଜଗନ୍ନାଥ ମନ୍ଦିରରେ ଚୂନ ଦିଆଯିବା କାର୍ଯ୍ୟ ଅନ୍ୟତମ ଉଲ୍ଲେଖଯୋଗ୍ୟ । ପ୍ରବଳ ସାହସୀ ରାଜା ଦିବ୍ୟସିଂହ ଦେବଙ୍କ ମୃତ୍ୟୁ ପରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଉପରେ ମୋଗଲମାନଙ୍କ କୋପଦୃଷ୍ଟି ଅଧିକ ପଡ଼ିଥିଲା । ପ୍ରବଳ ପରାକ୍ରମୀ ମୋଗଲମାନଙ୍କ ଆକ୍ରମଣରେ ଦମ୍ଭହୀନ ହେବା ଗଜପତି ରାଜାଙ୍କ ପକ୍ଷରେ ନିତାନ୍ତ ଅସମ୍ଭବ ହୋଇପଡ଼ିଥିଲା । ତେଣୁ ମୋଗଲ ସୁବେଦାର ମନଇଚ୍ଛା ଅତ୍ୟାଚାର ଚଳାଇ ପ୍ରଜାମାନଙ୍କୁ ଅସ୍ତବ୍ୟସ୍ତ କରିଦେଇଥିଲେ । ସେହି ଘଟଣାକୁ ଲକ୍ଷ୍ୟ କରି କବି ବାଲିଗାଁ ଦାସ ତାଙ୍କ ପୁସ୍ତକରେ ଲେଖିଛନ୍ତି—

"ତଦନ୍ତେ ହରେକୃଷ୍ଣ ଦେବ । ସାତରେ ଅଭ୍ୟାନ ହୋଇବ ।।
ଏହି ଠାବରୁ କଳି ଲାଗି । ଓଡ଼ିଶା ହେଲେ ସିଦ୍ଧ ଭାଗି ।।"

ରାଜା ହରେକୃଷ୍ଣ ଦେବଙ୍କ ପରେ ଗଜପତି ଗୋପୀନାଥ ଦେବ ଖ୍ରୀଷ୍ଟାବ୍ଦ ୧୭୨୦ରୁ ୧୭୨୭ ପର୍ଯ୍ୟନ୍ତ ଖୋର୍ଦ୍ଧା ସିଂହାସନ ଆରୋହଣ କରିଥିଲେ । ମାଦଳାପାଞ୍ଜିରେ ଗୋପୀନାଥ ଦେବଙ୍କ ଶାସନକାଳର କୌଣସି ବିଶେଷ ବିବରଣୀର ଉଲ୍ଲେଖ କରାଯାଇ ନାହିଁ । ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ ପ୍ରଦତ୍ତ ବିବରଣୀରୁ ଜଣାଯାଏ ଯେ, ଗୋପୀନାଥ ଦେବଙ୍କ ଅମଳରେ ମୁର୍ଶୀଦ କୁଲି ଖାଁ କଟକରେ ମୋଗଲ ସୁବେଦାର ନିଯୁକ୍ତ ହୋଇଥିବାରୁ ହିନ୍ଦୁ ପ୍ରଜାମାନଙ୍କ ଉପରେ କିମ୍ବା ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ବିରୁଦ୍ଧରେ ବିଶେଷ ଆକ୍ରମଣ ହୋଇନଥିଲା; କିନ୍ତୁ ଭକ୍ତକବି ବାଲିଗାଁ ଦାସ ତାଙ୍କ ରଚନାରେ ଯେଉଁ ବିବରଣୀ ପ୍ରଦାନ କରିଛନ୍ତି, ସେଥିରୁ ଜଣାଯାଏ—ସେତେବେଳେ ମୋଗଲମାନଙ୍କ ଆକ୍ରମଣ ତୀବ୍ରତର ହୋଇଉଠିଥିଲା ଏବଂ ଓଡ଼ିଶା ରାଜ୍ୟରେ ମହା ବିଶୃଙ୍ଖଳା ସଙ୍ଗଠିତ ହୋଇଥିଲା । ଗଜପତି ରାଜାଙ୍କ ଅପାରଗତାର ସୁଯୋଗନେଇ ଦେଶରେ ମୋଗଲମାନେ ଯେପରି ଆତଙ୍କ ସୃଷ୍ଟି କରିଥିଲେ; ସ୍ୱୈର ଖଣ୍ଡମାନେ ମଧ୍ୟ ଅନୁରୂପ ଉତ୍ପାତ କରିଥିଲେ । ହାତଗୁହାର

ଶୁଣିବାପାଇଁ ରାଜାଙ୍କର ଶକ୍ତି ବା ସାମର୍ଥ୍ୟ ନ ଥିଲା । ତେଣୁ ଦେଶରେ ଅରାଜକତା ବ୍ୟାପି-ଯାଇଥିଲା ।

"ତଦନ୍ତେ ଗୋପୀନାଥ ଦେବ । ସେ ହୋଇବେ ଦନ ରାଜା ହେବ ॥
ଓଡ଼ିଶା ରାଜତ ହୋଇଣ । ଦଶ ସେ ଅଙ୍କ କଟାଇଣ ॥
ସେଠାରୁ ହେବ ମହାବାତ । କଳି ଲାଗିବ ଉତପାତ ॥
ଜବନ ଆସିବେ ଯେ ମାଡ଼ି । ଓଡ଼ିଶା ପଳାଇବେ ଛାଡ଼ି ॥
ଅନେକ ଗୋଳ ହେବ ପୁଣ । ବାଜିବ ମହାଘୋର ରଣ ॥
ବୈର ଯେ ଖଣ୍ଡ ମାରୁଥିବେ । ପରଜା ଘର ବନ୍ଧନେବେ ॥
ରାଜା ଯେ ଅବିବେକ ହୋଇ । ଗୁହାରି ନ ଶୁଣିବେ କେହି ॥

ଭକ୍ତକବି ବାଳିଗାଁ ଦାସଙ୍କର ଏହି ବିବରଣୀରୁ ଅନୁମାନ କରାଯାଏ, ରାଜା ଗୋପୀନାଥ ଦେବ ନିତାନ୍ତ ନିଷ୍କ୍ରିୟ ହୋଇପଡ଼ିଥିଲେ । ତେଣୁ ତାଙ୍କ ପ୍ରତି ପ୍ରଜାମାନେ ଅତ୍ୟନ୍ତ ରୁଷ୍ଟ ହୋଇ ତାଙ୍କୁ ଖୋରଧା ରାଜନଗର ମଧ୍ୟରେ ହତ୍ୟା କରିଥିଲେ । ମାଦଳା-ପାଞ୍ଜିରେ ଏହି ବିବରଣୀର ସତ୍ୟତା ସମ୍ବନ୍ଧରେ ଉଲ୍ଲେଖ ରହିଛି—

"ଏ ଉତ୍ତାରେ ଏହାଙ୍କ ପୁଅ ଗୋପୀନାଥ ରାୟ ଗୋସାଇଁ ରାଜା ହେଲେ । ଏ ମହାରାଜା ଅ୧୦ଙ୍କ ଦ୨୮ନେ ଦଆନ ସଇୟାଦ ବେଗ୍ ଖୋଜା, କୃଷ୍ଣ ନରେନ୍ଦ୍ର, ବେଲୁ ଭ୍ରମରବର ରାୟ ଏ ତିନି ଜଣେ ସୂର୍ଯ୍ୟ ଉଦୟରୁ ଖୋରଧା ନଅରେ ପଶି ଏ ରାଜାଙ୍କୁ ମାରି ପକାଇଲେ ।"

କବି ବାଳିଗାଁ ଦାସଙ୍କ ପ୍ରଦତ୍ତ ବିବରଣୀ ମାଦଳାପାଞ୍ଜିରେ ବିଶେଷ ଭାବରେ ଉଲ୍ଲେଖ କରାଯାଇ ନଥିଲେହେଁ, ତାଙ୍କ ହତ୍ୟାକାଣ୍ଡରୁ ବେଶ୍ ସୂଚନା ମିଳେ ଯେ, ଜନସାଧାରଣ ରାଜାଙ୍କ କାର୍ଯ୍ୟରେ ନିତାନ୍ତ ଅସନ୍ତୁଷ୍ଟ ଥିଲେ । ତେଣୁ ହତ୍ୟାକରିବାରେ ପ୍ରଜାମାନଙ୍କର ଆନ୍ତରିକ ସମର୍ଥନ ଥିଲା; କିନ୍ତୁ 'ମାଦଳାପାଞ୍ଜି' ରାଜକୀୟ ନଥି ହୋଇଥିବାରୁ ଘଟଣାର ପୂର୍ଣ୍ଣ ରୂପରେଖ ଏଥିରେ ଉଲ୍ଲେଖ କରିବା ସମ୍ଭବ ନୁହେଁ । ସେହି ଦୃଷ୍ଟିରୁ ବାଳିଗାଁ ଦାସଙ୍କ ବିବରଣୀରେ ଐତିହାସିକ ସତ୍ୟତା ନିହିତ ବୋଲି ସ୍ୱୀକାର କରିବା ଅସମୀଚୀନ ନୁହେଁ ।

ଗୋପୀନାଥ ଦେବଙ୍କ ହତ୍ୟା ପରେ ତାଙ୍କ ସାନଭାଇ କେଶବ ରାୟ ରାମଚନ୍ଦ୍ର ଦେବ (ଦ୍ୱିତୀୟ) ନାମରେ ଖୁରୁଧା ସିଂହାସନରେ ଅଭିଷିକ୍ତ ହୋଇଥିଲେ । ଏହା ଉଭୟ ବାଳିଗାଁ ଦାସଙ୍କ 'ଭାଗବତ' ଓ ମାଦଳାପାଞ୍ଜି ଗ୍ରନ୍ଥରେ ସମର୍ଥିତ ହୋଇଛି । ଦାସିଆ ବାଉରିଙ୍କ ବିବରଣୀରୁ ଜଣାଯାଏ—

"ରାମ ଯେ ଚନ୍ଦ୍ର ଦେବ ପୁଣ । ରାଜା ଭକ୍ଷିବ ସୁରାପାନ ॥
ରାଜ୍ୟରୁ ଛାଡ଼ି ପଳାଇବ । ପଛମେ ଗୋପ୍ୟାନ ହୋଇବ ॥"

ଉକ୍ତ ବିବରଣୀରୁ ସ୍ପଷ୍ଟ ଜଣାଯାଏ ଯେ, ମୋଗଲମାନଙ୍କ ପ୍ରପୀଡ଼ନରେ ଗଜପତି ରାମଚନ୍ଦ୍ର ଦେବ ଖୋର୍ଦ୍ଧା ତ୍ୟାଗକରି ପଶ୍ଚିମ ଆଡ଼କୁ ଅର୍ଥାତ୍ ଖୋର୍ଦ୍ଧାର ପଶ୍ଚିମାଞ୍ଚଳରେ ଥିବା ଗଡ଼ଜାତରେ ଲୁଚି ରହିଥିଲେ ।

ଭକ୍ତ ବାଲୁଗାଁ ଦାସଙ୍କ ବିବରଣୀ ଅତି ସଂକ୍ଷେପ ହେଲେ ହେଁ, ସେଥିରୁ ଅନେକ ଐତିହାସିକ ତଥ୍ୟର ସୂଚନା ମିଳୁଛି । 'ମାଦଳାପାଞ୍ଜି'ର ବିବରଣୀରୁ ରାଜା ରାମଚନ୍ଦ୍ର ଦେବ (୨ୟ)ଙ୍କ ବିଷୟରେ ଅନେକ ତଥ୍ୟ ଉପଲବ୍ଧ ହୁଏ । ମାଦଳା ପାଞ୍ଜିର ସେହି ବିସ୍ତୃତ ତଥ୍ୟଗୁଡିକୁ ଅତି ସଂକ୍ଷେପରେ ଭକ୍ତକବି ବାଲୁଗାଁ ଦାସ ସ୍ୱରଚିତ ପୁସ୍ତକରେ ଲିପିବଦ୍ଧ କରିଛନ୍ତି ।

'ମାଦଳା ପାଞ୍ଜି'ର ବିବରଣୀ ଅନୁସାରେ ଗଜପତି ରାମଚନ୍ଦ୍ର ଦେବ (୨ୟ) ଗୋପୀନାଥ ଦେବଙ୍କ ପରେ ରାଜସିଂହାସନ ଆରୋହଣ କରିଥିଲେ । ତାଙ୍କ ସମୟରେ ସୁଜା ଖାଁଙ୍କ ପୁତ୍ର ମହମ୍ମଦ ତକି ଖାଁ ଅତ୍ୟନ୍ତ ପ୍ରତାପଶାଳୀ ଦୁର୍ଦ୍ଧର୍ଷ ସୁବାଦାର ରୂପେ ପରିଚିତ ଥିଲେ । ତାଙ୍କ ସହିତ ପ୍ରଥମରୁ ଗଜପତି ରାମଚନ୍ଦ୍ର ଦେବଙ୍କର ସୁସମ୍ପର୍କ ରହିଲା ନାହିଁ । ତେଣୁ ସେ ଖୋର୍ଦ୍ଧା ରାଜାଙ୍କ ବିରୁଦ୍ଧରେ ଅଭିଯାନ ଚଳାଇ ଶିଶୁପାଳଗଡ଼ ଛାରଖାର କରିଦେଲେ । ତପୂରେ ରାଜା ରାମଚନ୍ଦ୍ର ସୁବାଦାରଙ୍କ ଇଚ୍ଛାନୁସାରେ ନିଜର କେତେଜଣ ଉଚ୍ଚପଦସ୍ଥ କର୍ମଚାରୀଙ୍କୁ ପରିବର୍ତ୍ତନ କରିଦେଇଥିବାରୁ ଉଭୟଙ୍କ ମଧ୍ୟରେ ମୈତ୍ରୀ ସମ୍ପର୍କ ସ୍ଥାପିତ ହୋଇଥିଲା ।

କିଂବଦନ୍ତୀରୁ ଜଣାଯାଏ, ରାଜା ରାମଚନ୍ଦ୍ର ଦେବ ମୁସଲମାନ କନ୍ୟାଙ୍କ ପାଣି ଗ୍ରହଣ କରି ଇସଲାମ ଧର୍ମ ଗ୍ରହଣ କରିବାରୁ ତାଙ୍କ ପୁତ୍ରମାନେ ଓ ରାଣୀ ତାଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ ଏବଂ ପରେ ତାଙ୍କ ପୁତ୍ର ଭଗୀରଥି କୁମାର ଖୋର୍ଦ୍ଧାଗଡ଼ ଅଧିକାର କରି ବୀରକେଶରୀ ଦେବ (୧ମ) ନାମରେ ସିଂହାସନ ଅଧିକାର କରିଥିଲେ ।

ଖୁବ୍ ସମ୍ଭବତଃ ରାଜା ରାମଚନ୍ଦ୍ର ଦେବ ବିଧର୍ମୀ ହୋଇଥିବା ଘଟଣାକୁ ଲକ୍ଷ୍ୟକରି ଭକ୍ତକବି ବାଲୁଗାଁ ଦାସ 'ରାଜା ଭକ୍ଷିବ ସୁରାପାନ' ଓ 'ରାଜ୍ୟରୁ ଛାଡ଼ି ପଳାଇବ' ବୋଲି ଉଲ୍ଲେଖ କରିଛନ୍ତି । କାରଣ ରାଜା ରାମଚନ୍ଦ୍ର ଦେବ ଯବନ କନ୍ୟାର ପାଣିଗ୍ରହଣ କରିବାରୁ ଦେଶରେ ଚହଳ ପଡ଼ିଗଲା ଏବଂ ନିଜେ ରାଣୀ ଓ ପୁତ୍ରମାନେ ତାଙ୍କର ବିରୋଧୀ ହୋଇଗଲେ । ଆଖପାଖ ଅଞ୍ଚଳର ରାଜନ୍ୟବର୍ଗ ରାମଚନ୍ଦ୍ର ଦେବଙ୍କ ବିରୋଧରେ ଭଗୀରଥି କୁମାରଙ୍କୁ ସାହାଯ୍ୟ କରିଥିଲେ ।

କବି ବାଲୁଗାଁ ଦାସଙ୍କ 'ଆଗତ ଭବିଷ୍ୟ' ପୁସ୍ତକର ଦ୍ୱିତୀୟ ଅଧ୍ୟାୟଟି 'ଆଗତ ଭବିଷ୍ୟ' ଦୃଷ୍ଟିରୁ ଯେତେ ଉପାଦେୟ ନୁହେଁ, ଖୋର୍ଦ୍ଧା ରାଜବଂଶର ସଂକ୍ଷିପ୍ତ ଇତିହାସ ଦୃଷ୍ଟିରୁ ଅତ୍ୟନ୍ତ ମୂଲ୍ୟବାନ ।

'ଆଗତ ଭବିଷ୍ୟ'ର ତୃତୀୟ ଅଧ୍ୟାୟଟି ଦ୍ୱିତୀୟ ଅଧ୍ୟାୟ ପରି କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ । ଏ ଅଧ୍ୟାୟରେ ରାଜା ରାମଚନ୍ଦ୍ର ଦେବ (୨ୟ)ଙ୍କ ସମୟରେ କି କି ପ୍ରକାର ଅତ୍ୟାଚାର ହୋଇଥିଲା; ତା'ର ସଂକ୍ଷିପ୍ତ ବିବରଣୀ ମିଳୁଛି ।

ବାଲଗାଁ ଦାସଙ୍କ 'ଆଗତ ଭବିଷ୍ୟ' ଅନୁସାରେ, ରାମଚନ୍ଦ୍ର ଦେବଙ୍କର ଆଠଅଙ୍କରୁ ଦେଶବ୍ୟାପୀ ଭୀଷଣ ଉପଦ୍ରବ ହୋଇଥିବାର ସୂଚନା ମିଳୁଛି । କବି ସଂକ୍ଷେପରେ ବର୍ଣ୍ଣନା କରି କହିଛନ୍ତି—

"ଏ ରାଜ୍ୟ ରାମଚନ୍ଦ୍ର ଦେବ । ପ୍ରତାପୀ ବୀର ସୁରଦେବ ॥
ଆଠ ଯେ ଅଙ୍କ ଠାରୁ ପୁଣ । ଲାଗିବ ମହାଘୋର ରଣ ॥
ଦମନ ଆସିବେ ଯେ ବାହି । ପାଞ୍ଚ ସହସ୍ର ବଳ ଥାଇ ॥
ପୃଥିବୀ ରହିବେ ଯେ ଘୋଟି । ଗୋରୁ ଯେ ଜବେ କଣ କାଟି ॥"

ସେହି ସମୟରେ ସମଗ୍ର ଦେଶ ଯବନମାନଙ୍କ ଅତ୍ୟାଚାରରେ ଉଚ୍ଛନ୍ନ ହୋଇ ଉଠିଥିଲା । ଦେବମନ୍ଦିର ଆକ୍ରମଣ, ନାରୀଧର୍ଷଣ, ଆତଙ୍କରାଜ ସୃଷ୍ଟି ସେ ସମୟର ପ୍ରଧାନ ଘଟଣା ହୋଇଉଠିଥିଲା । ପ୍ରଜାମାନେ ଆତଙ୍କିତ ହୋଇ ଘରଦ୍ୱାର ଛାଡ଼ି ପଳାଇ-ଯାଇଥିଲେ ଏବଂ ସେହି ଦୁର୍ଦ୍ଦିନର ସୁଯୋଗ ନେଇ ଖଣ୍ଡମାନେ ମନଇଚ୍ଛା ଲୁଣ୍ଠନ ଚଳାଇ ଦେଶବାସୀଙ୍କୁ ବ୍ୟତିବ୍ୟସ୍ତ କରି ପକାଇଥିଲେ । ବହିରାକ୍ରମଣ ଫଳରେ ରାମଚନ୍ଦ୍ର ଦେବ ସମ୍ପୂର୍ଣ୍ଣ ପରାଭୂତ ହୋଇଯାଇଥିଲେ; ତେଣୁ ଆକ୍ରମଣକାରୀଙ୍କର ସମ୍ମୁଖୀନ ହେବା ତାଙ୍କ ପକ୍ଷରେ ଆଦୌ ସମ୍ଭବ ହୋଇନଥିଲା । ଫଳରେ ଦେଶରେ ସମ୍ପୂର୍ଣ୍ଣ ଅରାଜକତା ବ୍ୟାପିଥିଲା । ସେହି ଘଟଣାକୁ ଲକ୍ଷ୍ୟ କରି କବି ଦାସିଆ ବର୍ଣ୍ଣନା କରିଛନ୍ତି—

"ଗୁହାରି ନ ଶୁଣିବେ ରାଜା । ବିକଳ ହେବେ ଜନ ପ୍ରଜା ॥
କ୍ଷଣେ ଯେ ସଂଗ୍ରାମ ଛାଡ଼ିବେ । ଯୁଦ୍ଧ ଦେଖିଲେ ପଳାଇବେ ॥"

ଗଜପତି ରାମଚନ୍ଦ୍ର ଦେବ ଏହି ଅବସ୍ଥାକୁ ଆଦୌ ସମ୍ଭାଳିବାରେ ସମର୍ଥ ହୋଇ ନଥିଲେ । ଦେଶରେ ବ୍ୟାପିଥିବା ଆତଙ୍କରାଜକୁ ଲକ୍ଷ୍ୟ କରି ସେ ମର୍ମାହତ ହୋଇଉଠିଥିଲେ । ଶେଷକୁ ସେ ବାଧହୋଇ ସୁବାଦାରଙ୍କର ସମସ୍ତ ସର୍ତ୍ତ ମାନିନେଇଥିବା ଅସମ୍ଭବ ନୁହେଁ । ତେଣୁ କିଂବଦନ୍ତୀ ଅନୁସାରେ ସୁରାପାନ କରିବା, ଯବନ କନ୍ୟାର ପାଣିଗ୍ରହଣ କରି ନିଜେ ବିଧର୍ମୀ ହେବା ଅସମୀଚୀନ ବୋଲି ମନେହୁଏ ନାହିଁ । ଏହି ଘଟଣା ମଧ୍ୟ ମାଦଳା ପାଞ୍ଜି ଦ୍ୱାରା ପକ୍ଷାନ୍ତରେ ସମର୍ଥିତ ହୋଇଛି—

"ଏ ରାଜାଙ୍କ ଦିନରେ କଟକ ସୁବା ସୁଜାଖାଁ ନସକର ଯେନ ରାଜାଙ୍କ ସଙ୍ଗେ ଯୁଦ୍ଧିକରି ରାଜାଙ୍କୁ ଧରି ଆଣି କଟକରେ ରଖିଲେ । ଏ ଉତ୍ତାରୁ କେତେକ ଦିନ ଗଲା ଉତ୍ତାରୁ ଏ ରାଜା ନବାବଙ୍କ ଝିଅକୁ ହାରିଲେ । ଜାତିଭ୍ରଷ୍ଟ ହୋଇଲେ, ପଠାଣଙ୍କ ସଙ୍ଗେ ଆତଯାତ ହେଲେ ।" (୧)

ଭକ୍ତ ବାଲଗାଁ ଦାସଙ୍କ ବିବରଣୀରୁ ଜଣାଯାଏ ଯେ, ରାଜା ରାମଚନ୍ଦ୍ର ଦେବଙ୍କ ଅମଳରେ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ଉପରେ ତୀବ୍ର ଆକ୍ରମଣ ହୋଇଥିଲା । ସେହି ଆକ୍ରମଣ

(୧) ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ (ପ୍ରାଚୀ ସଂସ୍କରଣ)—ପୃ. ୩୬

କବଳରୁ ଶ୍ରୀମନ୍ଦିରକୁ ରକ୍ଷା କରିବାର କୌଣସି ଉପାୟ ନ ଦେଖି, ମନ୍ଦିର କର୍ତ୍ତୃପକ୍ଷ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ନେଇ ଚିଲିକା ପାରକରାଇ ଦକ୍ଷିଣକୁ ଚାଲିଯାଇଥିଲେ । ଠିକ୍ ରଥଯାତ୍ରା ସମୟରେ ମହାପ୍ରଭୁଙ୍କୁ ଅଣାଇ, ଯାତ୍ରା ମହୋତ୍ସବ ବଢ଼ାଇଦେଇ ପୁଣି ଦକ୍ଷିଣକୁ ପଠାଇଦେଇଥିଲେ । ତତ୍ପରେ ପାଞ୍ଚବର୍ଷ କାଳ କୌଣସି ଯାତ୍ରା ହୋଇନଥିଲା ।

"ଆମ୍ଭେ ଯେ କ୍ଷେତ୍ର ଛାଡ଼ିଯିବୁ । ଦକ୍ଷିଣେ ଯାଇଣ ଲୁଚିବୁ ॥
ପୁଣି ଆଷାଢ଼ ମାସଠାରେ । ଆମ୍ଭେ ଆସିବୁ କ୍ଷେତ୍ରବରେ ॥
ଚଢ଼ିବୁ ନନ୍ଦଘୋଷ ରଥ । କରିବୁ ଶ୍ରୀଗୁଣ୍ଡିଚ୍ଚ ଯାତ ॥
ଯାତ୍ରା ସାରିବୁ ବେଗେ ପୁଣ । ପଳାଇ ପଶିବୁ ଦକ୍ଷିଣ ॥
ପାଞ୍ଚ ବରଷ ନୋହେ ଯାତ । ହୋଇବ କଲି ଯେ ଭାରତ (୧) ॥

ଭକ୍ତକବିଙ୍କର ଏହି ଉକ୍ତି ବିଭିନ୍ନ ସୂତ୍ରରୁ ସମର୍ଥନ ହୋଇଥାଏ । ଏ ସମ୍ବନ୍ଧରେ 'ମାଦଳା ପାଞ୍ଜି'ରୁ ଜଣାଯାଏ—

"ସିଂହ ଦାଂ୨ନେ ଶ୍ରୀଗୁମ୍ଫ ଛଣ୍ଟାଉ ପ୍ରମାଣେ ବଡ଼ ପରିକ୍ଷା ପରମାନନ୍ଦ କୁଅଁର ମହାପାତ୍ର, ସାନ ପରିକ୍ଷା ବିଷ୍ଣୁ ପଣ୍ଡିମକବାଟ ମହାପାତ୍ରେ ଦୁଇଜଣ ଅଧିକାରେ ପରମେଶ୍ୱରଙ୍କୁ ନୀଳାଦ୍ରି ସିଂହାସନ ଛଡ଼ାଇ ଚଉଦୋଳରେ ବିଜେକରାଇ ଚିଲିକା ପାରହୋଇ ଦୋବନ୍ଧା-ଠାରେ ବାଣପୁର ନଈଠାରେ ହରିଶ୍ୱରଙ୍କ ମଣ୍ଡପରେ ବିଜେ କରାଇଲେ । ଅ ୧୦ କୁମ୍ଭ ଦାଂ୭ନେ ନବାବ ମହମ୍ମଦ ଖାଁ ଖୁରୁଧା ଘେନିଲାକୁ ନୂଆଗଡ଼ ବିଜେ କଲେ । ଏଠାରୁ ବିଜେ କରି ଖଣ୍ଡିଆପଡ଼ା ଦୋଲଗଡ଼ ବିଜେକଲେ । ପରମେଶ୍ୱରଙ୍କୁ ନଈରି ହରିଶ୍ୱରଙ୍କ ମଣ୍ଡପରୁ ବିଜେ କରାଇ ଚଉଦୋଳ ସହିତ କରି ଗୃପରେ ବିଜେ କରାଇଲେ । ଖଲିକୋଟ ସୀମା ଚିକିଲି ବିଜେ କରାଇଲେ ।" (୨)

ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କ 'ଖୁରୁଧା ଇତିହାସ'ରୁ ଜଣାଯାଏ ଯେ, ରାମଚନ୍ଦ୍ର ଦେବ 'ଖୁରୁଧା ଗଡ଼'ରେ ନଜରବନ୍ଦୀ ଥିବା ଅବସ୍ଥାରେ ଦୋଲଯାତ୍ରା ପୂର୍ବରୁ ଦୁର୍ଗ ମଧ୍ୟରୁ ଗୋପନ ଭାବରେ ପଳାୟନ କରି, ପୁରୀରେ ରଥ ଗୁଣ୍ଡିଚ୍ଚ ଯାତ୍ରା ସୁସମ୍ପନ୍ନ କରାଇ ପୁଣି ଖୋରଧା ଫେରିଆସିଲେ । ତତ୍ପରେ ପୁଣି ଶ୍ରୀମନ୍ଦିର ଉପରେ ଆକ୍ରମଣର ଆଶଙ୍କା ଥିବାରୁ, ରାଜା ରାମଚନ୍ଦ୍ରଙ୍କ ପରାମର୍ଶକ୍ରମେ ତାଙ୍କ ବିଶ୍ୱସ୍ତ କର୍ମଚାରୀ ବଡ଼ ପରିକ୍ଷା ପରମାନନ୍ଦ କୁଅଁର ମହାପାତ୍ର ଓ ସାନ ପରିକ୍ଷା ବିଷ୍ଣୁ ପଣ୍ଡିମକବାଟ ସିଂହ ସିଂହ ୧୨ଦିନ ଶ୍ରୀଜଗନ୍ନାଥ ମହାପ୍ରଭୁ ଓ ଅନ୍ୟ ତିନ ବିଗ୍ରହଙ୍କୁ ଚଉଦୋଳରେ ବସାଇ 'ଦୋବନ୍ଧା'ଠାକୁ ନେଲେ ଏବଂ ସେଠାରୁ ଡଙ୍ଗାରେ ବସାଇ ଚିଲିକା ପାରକରାଇ ବାଣପୁର ନଈର ହରିଶ୍ୱର ମଣ୍ଡପରେ ବିଜେ କରାଇଲେ । ଏହି ସମ୍ବାଦ ପାଇବା ମାତ୍ରେ ସୁବାଦାର ତକିଖାଁ ପୁଣି

(୧) ବାଲିଗାଁ ଦାସିଆ ଭାଗବତ, ତୃତୀୟ ଅଧ୍ୟାୟ—ପଦ ୨୪–୨୯

(୨) ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ (ପ୍ରାଚୀ ସଂସ୍କରଣ)—ପୃ: ୩୪–୩୫

ଥରେ ଖୋରଧା ଆକ୍ରମଣ କରି ଗଜପତି ରାମଚନ୍ଦ୍ର ଦେବଙ୍କୁ ସମୁଚିତ ଶିକ୍ଷା ଦେବାଲାଗି ମନସ୍ଥ କଲେ । ତହୁଁ ରାମଚନ୍ଦ୍ର ଦେବ ଆତ୍ମରକ୍ଷାର କୌଣସି ଉପାୟ ନଦେଖି ଖୋରଧାରୁ ପଳାଇ ଯାଇ ପ୍ରଥମେ ନୟାଗଡ଼, ତତ୍ପରେ ଖଣ୍ଡପଡ଼ା ଓ ପରିଶେଷରେ ବୋଲଗଡ଼ଠାରେ ଆଶ୍ରୟ ନେଲେ ଏବଂ ଶ୍ରୀଚତୁର୍ଦ୍ଧା ମୂର୍ତ୍ତିଙ୍କୁ ନରପଦରେ ରଖିବା ଲାଗି ହଷ୍ଟେଶ୍ୱର ମଣ୍ଡପରୁ ଖଲିକୋଟ ସୀମାବର୍ତ୍ତୀ ଟିକିଲିଠାକୁ ପଠାଇଦେଲେ । ପୁଣି ପରବର୍ଷ ରଥଯାତ୍ରା ସମୟରେ ଟିକିଲିଠାରୁ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଅଣାଇ ରାମଚନ୍ଦ୍ର ଦେବ ଶ୍ରୀଗୁଣ୍ଡିଚା ଯାତ୍ରା କରାଇଲେ । ତତ୍ପରେ ଶ୍ରୀମନ୍ଦିର ଉପରୁ ବିପଦ ଦୂର ନ ହୁଅନ୍ତେ, ଶ୍ରୀଜଗନ୍ନାଥଙ୍କୁ ଆଠଗଡ଼ (ଗଞ୍ଜାମ) ରାଜ୍ୟର 'ମାରଦା' ଠାରେ କିଛିକାଳ ରହିବାକୁ ପଡ଼ିଥିଲା ।

ଖୁବ୍ ସମ୍ଭବତଃ କବି ବାଲଗାଁ ଦାସ ସେହି ଘଟଣାକୁ ଲକ୍ଷ୍ୟ କରି 'ପଳାଇ ଲୁଚିବୁ ଦକ୍ଷିଣ × × × ପାଞ୍ଚବରଷ ନୋହେ ଯାତ' ପ୍ରଭୃତି ଲେଖିଛନ୍ତି । ଶ୍ରୀଜଗନ୍ନାଥ ମହାପ୍ରଭୁ କବିଙ୍କୁ ବ୍ରାହ୍ମଣ ବେଶରେ 'ଆଗତ ଭବିଷ୍ୟ' କହୁଥିବାର ବର୍ଣ୍ଣନା ପ୍ରସ୍ତୁତ ପୁସ୍ତକରେ ଥିବାରୁ ଏ ସମୟର ବହୁ ପୂର୍ବବର୍ତ୍ତୀ କାଳରେ ବାଲଗାଁ ଦାସ ଜନ୍ମଗ୍ରହଣ କରିଥିବା ଐତିହାସିକ ଦୃଷ୍ଟିକୋଣରୁ ଆଦୌ ଗ୍ରହଣଯୋଗ୍ୟ ନୁହେଁ !

ତତ୍ପରେ କବି ବାଲଗାଁ ଦାସ, ପୂର୍ବବର୍ତ୍ତୀ କବିଙ୍କ ବର୍ଣ୍ଣନା ଅନୁସାରେ ଅତିମାନବୀୟ ଘଟଣାବଳୀର ଅବତାରଣା କରି ଓଡ଼ିଶାର ବିଭିନ୍ନ ଦେବୀ-ଦେବତା କପରି ନିଜ ନିଜର ଯୋଗିନୀଙ୍କ ଗହଣରେ ସମଗ୍ର ଓଡ଼ିଶାରେ ବୁଲି ମ୍ଳେଚ୍ଛ ସଂହାର କଲେ ତା'ର ଏକ ସୁନ୍ଦର ଆଲେଖ୍ୟ ଅଙ୍କନ କରିଛନ୍ତି । ସେହି ପ୍ରସଙ୍ଗରେ କଲ୍କି ଅବତାରଙ୍କ ଆବିର୍ଭାବ ଓ ତାଙ୍କର ପରାକ୍ରମ ତଥା ଦୁର୍ଦ୍ଧର୍ଷ କାର୍ଯ୍ୟାବଳୀର ବର୍ଣ୍ଣନା କରି ଅଧ୍ୟାୟଟିକୁ ତେସ୍ତ୍ରୀନବେ ପଦରେ ଶେଷ କରିଥିବାର ଉଲ୍ଲେଖ କରିଥିଲେ ମଧ୍ୟ ରାଜ୍ୟ ସଂଗ୍ରହାଳୟ ପୋଥିରେ ଏକଶହ ତେରପଦ ରହିଛି—

"ଏ ଅଧ୍ୟା ତେସ୍ତ୍ରୀନବେ ପଦ । କେ ଜାଣି ପାରିବ ଆପାଦ ॥"

କବି ଚତୁର୍ଥ ଅଧ୍ୟାୟରେ ଦେଶରେ ମହାଘୋର ବିପ୍ଳବ ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି । ଦିଲ୍ଲୀଠାରୁ ଆରମ୍ଭ କରି ଓଡ଼ିଶା ପର୍ଯ୍ୟନ୍ତ ଘୋର ରଣକ୍ଷେତ୍ର ସୃଷ୍ଟି ହୋଇ ବହୁଲୋକ ନାଶଯିବେ ଏବଂ ସମସ୍ତେ ଦେବୀ ଖର୍ପରରେ ପଡ଼ି ପ୍ରାଣ ହରାଇବେ ବୋଲି ଉଲ୍ଲେଖ କରିଛନ୍ତି ।

"ଡିଲ୍ଲୀରୁ କଳିଙ୍ଗ ଦକ୍ଷିଣ । ଲଗିବ ମହାଘୋର ରଣ ॥
କାକ ଶୃଗାଳ ଘୋର ରଡ଼ି । କାତ୍ୟାୟନୀ ଚଣ୍ଡୀ ଶୂନ୍ୟେ ଉଡ଼ି ॥
ଡାକନୀ ମହାଘୋର ଡାକ । ଆକାଶେ ମଣ୍ଡିବ ଚମକ ॥
ପତଙ୍ଗ ପ୍ରାୟେ ଉଡ଼ୁଥିବେ । ପାପୀଜନଙ୍କୁ ମାରିନେବେ ॥"

ଏହି ବର୍ଣ୍ଣନାରୁ ସ୍ପଷ୍ଟ ଜଣାଯାଏ ଯେ, ଦିଲ୍ଲୀଠାରୁ ଆରମ୍ଭ କରି ଓଡ଼ିଶାର ଦକ୍ଷିଣ ସୀମା ପର୍ଯ୍ୟନ୍ତ ସେ ସମୟରେ ଘୋର ଯୁଦ୍ଧ ସଙ୍ଘଟିତ ହୋଇଥିଲା । ଦୁର୍ଦ୍ଧର୍ଷ ମୋଗଲଶକ୍ତି

ବିରୁଦ୍ଧରେ ମରହଟ୍ଟାଶକ୍ତି ଟକ୍କର ଦେବା ଲାଗି ସେତେବେଳେ ଭିନ୍ନ ଭିନ୍ନ ରଣକ୍ଷେତ୍ରରେ ପ୍ରସ୍ତୁତ ହେଉଥିଲେ ଏବଂ ରାଜପୁତ୍ ଶକ୍ତି ମଧ୍ୟ ବେଳେବେଳେ ମୁଣ୍ଡଟେକି ମୋଗଲ ସାମ୍ରାଜ୍ୟକୁ ଟଳମଳ କରିଦେଉଥିଲେ । ବିଶେଷତଃ ମୋଗଲ ଶାସନର ବଙ୍ଗ, ବିହାର, ଓଡ଼ିଶାରେ ସେତେବେଳେ ଆତଙ୍କରାଜ ବ୍ୟାପିଯାଇଥିଲା । ମୋଗଲ ସୁବାଦାରମାନଙ୍କ ଧର୍ମାନ୍ଧନୀତି ଯୋଗୁ ଏହି ତିନୋଟି ରାଜ୍ୟର ପ୍ରଜାମାନେ ତ୍ରାହି ତ୍ରାହି ଡାକଗୁଡ଼ୁଥିଲେ । କେବଳ ସେତିକି ନୁହେଁ, ମୋଗଲ ସର୍ଦ୍ଦାର ଓ ସୁବାଦାରମାନେ ପରସ୍ପର ମଧ୍ୟରେ ପ୍ରତିଯୋଗିତା ଆରମ୍ଭ କରି ପ୍ରଜା-ଉତ୍ପୀଡ଼ନ ଦ୍ୱାରା ବାଦ୍‌ଶାହଙ୍କୁ ସନ୍ତୁଷ୍ଟ କରାଉଥିଲେ ।

ସେହି ସମସ୍ତ ରାଜନୈତିକ ବାତାବରଣକୁ ଲକ୍ଷ୍ୟ କରି କବି ବାଲ୍‌ଗାଁ ଦାସ ଏପରି ବର୍ଣ୍ଣନା କରିଛନ୍ତି ଏବଂ ଦେଶର ଦୂଷିତ ଅବସ୍ଥାକୁ ଲକ୍ଷ୍ୟକରି ତଦନୁସାରେ ଦେଶର ଭବିଷ୍ୟତ ସମ୍ବନ୍ଧରେ କେତେ ପ୍ରକାର କଳ୍ପନା କରିଛନ୍ତି ।

ଏହି ପ୍ରସଙ୍ଗରେ କବି ଆହୁରି ଟିକିଏ କଳ୍ପନାର ଉନ୍ନତ ସ୍ତରକୁ ଯାଇ ପୂର୍ବବର୍ତ୍ତୀ ପଞ୍ଚସଖାଙ୍କ ଭବିଷ୍ୟବାଣୀ ପରି 'ମୋହନା ମୋଗଲ ଅସିବ' × × 'ଭୁବନଠାରେ ସେ ରହିବେ' × × × 'ସୁବର୍ଣ୍ଣରେଖା ଯେନ ପୂଣ' × × × 'ରୁଷି ଯେ କୋଇଲା ଠାବେଣ' × × × 'ହରି ଯେ ଦୁଆର ଶାରଦା । ଏତେକେ କୁରୁକ୍ଷେତ୍ର ପଦା' ପ୍ରଭୃତିର ବର୍ଣ୍ଣନା କରିଛନ୍ତି । କେବଳ ସେତିକି ନୁହେଁ, ଓଡ଼ିଶାର ସେହି 'ମୋଗଲ ଗୋଳ' ସମୟରେ 'ନେପାଳ', କାଉଁରି (ଆସାମ) ଦେଶର ରାଜାମାନେ ନିଜନିଜର ସୈନ୍ୟସାମନ୍ତଙ୍କ ସହିତ ଆସି ଯୁଦ୍ଧରେ ଯୋଗଦେଇ ମ୍ଳେଚ୍ଛ ସଂହାରରେ ସାହାଯ୍ୟ କରିବେ ବୋଲି କବି ଭବିଷ୍ୟବାଣୀ ଶୁଣାଇଛନ୍ତି ।

ଏହି ପ୍ରସଙ୍ଗରେ କବି ବାଲ୍‌ଗାଁ ଦାସ ଗଜପତି ରାମଚନ୍ଦ୍ର ଦେବଙ୍କ ପୁତ୍ର ଭାଗୀରଥି କୁମାର ନିଜ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ଶେଷରେ ସଫଳତା ହାସଲ କରିଥିଲେ । ସେ ପାଟିଆ ରାଜା ପଦ୍ମନାଭ ଦେବଙ୍କୁ ଖୋରଧା ସିଂହାସନରୁ ହଟାଇ ବୀରକେଶରୀ ଦେବ ନାମରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ଖୁବ୍ ସମ୍ଭବତଃ ସେହି ଘଟଣାକୁ ଲକ୍ଷ୍ୟକରି କବି ବାଲ୍‌ଗାଁ ଦାସ ଲେଖିଛନ୍ତି—

"କୁମାର ବୀରବର ଜେନା । ଉଡ଼ାଇ ବୀରବର ବାନା ॥
ଧାଆନ ପାଦାନ୍ତ କରାନ୍ତ । ବାହୁଣ ଆସିବେ ନରାନ୍ତ ॥"

ମାଦଳା ପାଞ୍ଜି ଓ ସମସାମୟିକ ଇତିହାସର ବିବରଣୀରୁ ସ୍ପଷ୍ଟ ହୋଇଯାଏ ଯେ, ବୀରକେଶରୀ ଦେବ (ପୂର୍ବ ନାମ ଭାଗୀରଥି ଜେନାମଣି) ପିତାଙ୍କ ଆଚରଣରେ ଅସନ୍ତୁଷ୍ଟ ହୋଇ ନିଜ ଆତ୍ମୀୟ ରାଜନ୍ୟବର୍ଗଙ୍କ ସାହାଯ୍ୟ ଲୋଡ଼ିଥିଲେ ଏବଂ ସୁବେଦାରଙ୍କ ସମର୍ଥନ ପାଇବା ଲାଗି ଚେଷ୍ଟା କରିଥିଲେ । ସେ ସେଥିଲାଗି ଅନେକ କଷ୍ଟ ସ୍ୱୀକାର କରି ପରିଶେଷରେ ସଫଳତା ହାସଲ କରିଥିଲେ । ପରିଶେଷରେ ସୁବେଦାର ମୁର୍ଶିଦ୍ କୁଲିଖାଁଙ୍କ ଅନୁଗ୍ରହ ଲାଭକରି ଖୋରଧା ରାଜସିଂହାସନ ଅଧିକାର କରିଥିଲେ । ପିତାପୁତ୍ରଙ୍କର ମନୋମାଳିନ୍ୟ

ତଥା ମୋଗଲମାନଙ୍କ ଅତ୍ୟାଚାର ଫଳରେ, ଶାସନ ନୀତର ବିଶୃଙ୍ଖଳା ଲକ୍ଷ୍ୟ କରି, ପଟିଆରାଜା ପଦ୍ମନାଭ ଦେବ କଣ୍ଟଦନ ଲଗି ଖୋରଧା ସିଂହାସନ ଅଧିକାର କରି ନେଇଥିଲେ । 'ମାଦଳାପାଞ୍ଜି' ଏହି ଘଟଣାକୁ ମଧ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରେ—

"ଅନୁଗୁଳ ସୀମା ଗ୍ରଣୀ ଭୂଇଁରେ ଏ ବୀରକେଶରୀ ଦେବେ ମହାରାଜାଙ୍କ ୪ ଅଙ୍କ ବୃଷଭ ୯ ଦନକେ ନବାବ୍ ମୁସସ୍ତ କୁଲଖାଁ ଠାରୁ ମୁଖରସ୍ ଅଲଖାଁ ଆସି ବଡ଼ମ୍ବା ସୀମା ବୈଦେଶ୍ୱରଠାରେ ଟୀକା ଶିରୋପା ଦେଇ ଖୁରୁଧା ଶ୍ରୀନଗର ବଳେ କରାଇଲେ । ପଟିଆ ପଦ୍ମନାଭଦେବେ ପଳାଇ ପଟିଆରେ ରହିଲେ ।" (୧)

ପୁସ୍ତକର ପଞ୍ଚମ ଅଧ୍ୟାୟରେ କବି ବାଲଗାଁ ଦାସ ଓଡ଼ିଶାରେ କପରି ଶାନ୍ତି ସ୍ଥାପନ କରାହେଲା, ତହିଁର ଏକ ବିବରଣୀ ଦେଇଛନ୍ତି । ସେହି ପ୍ରସଙ୍ଗରେ ସେ ମରହଟ୍ଟାମାନଙ୍କ ଆଗମନ ସମ୍ବନ୍ଧରେ ପରୋକ୍ଷରେ ସୂଚନା ଦେଇଛନ୍ତି । ମୋଗଲଶକ୍ତିକୁ ପଦାନତ କରି ମରହଟ୍ଟାମାନେ ସମଗ୍ର ଭାରତରେ ଚହଲ ପକାଇଦେଇଥିଲେ । ସେମାନେ ହିନ୍ଦୁ ହୋଇ-ଥିବାରୁ ହିନ୍ଦୁମାନଙ୍କ ଧର୍ମମନ୍ଦର ତଥା ସାଂସ୍କୃତକ ଅନୁଷ୍ଠାନ ଉପରେ କୌଣସି ଆଞ୍ଚ ଆଣି ନଥିଲେ । କନ୍ତୁ ମରହଟ୍ଟାମାନଙ୍କ ଦୁର୍ବଳ ରଣନୀତ ତଥା ଶାସନ ନୀତ ଫଳରେ ସେମାନେ ପରବର୍ତ୍ତୀ କାଳରେ ଶାସନ କ୍ଷେତ୍ରରେ ବିଶେଷ ପ୍ରତପତ୍ତିଶାଳୀ ହୋଇନଥିଲେ । ସେତେକ-ବେଳେ ସେମାନେ ଓଡ଼ିଶାର ଶାସନ କ୍ଷମତା ମୋଗଲଙ୍କ ହାତରୁ ଛଡ଼ାଇ ନେଇଥିଲେ । ସେହି ଘଟଣାକୁ ଲକ୍ଷ୍ୟ କରି ବୋଧହୁଏ କବି ବାଲଗାଁ ଦାସ ଲେଖିଛନ୍ତି—

"ଡଲ୍ଲୀ ପାତଶା ଦେବେ ଧାଡ଼ି । ଆସିବେ ବଲକ୍ଷମା ମାଡ଼ି ॥

ତତ୍ପରେ ଶ୍ରୀଜଗନ୍ନାଥ ମନ୍ଦରରେ ଅପେକ୍ଷାକୃତ ଅଧିକ ଶାନ୍ତି ସ୍ଥାପିତ ହୋଇଥିଲା । ସେହି ପ୍ରସଙ୍ଗରେ ଶ୍ରୀଜଗନ୍ନାଥ ମହାପ୍ରଭୁ ଅନନ୍ତ କେଶରୀ ରୂପରେ ଆବିର୍ଭୂତ ହୋଇ ଶାନ୍ତି ସ୍ଥାପନ କରିଥିଲେ ବୋଲି ଭକ୍ତକବି ବର୍ଣ୍ଣନା କରିଛନ୍ତି ।

"ଚଢ଼ିବୁ ତେର ଅସୁଆର । ହସ୍ତରେ ଧରିଣ କୁଠାର ॥
କ୍ଷେତ୍ରରେ ପଶିବୁ ଧସାଇ । ଆମ୍ଭେ ଯେ ଥିବୁ ଦୁଇଭାଇ ॥"

ବୀରକେଶରୀ ଦେବଙ୍କ ରାଜତ୍ୱରେ ମୋଗଲ ଅତ୍ୟାଚାର ବଦୂରିତ ହୋଇ ଦେଶରେ ଶାନ୍ତି ସ୍ଥାପିତ ହୋଇଥିଲା । ଖୁବ୍ ସମ୍ଭବତଃ ସେ ସମୟ ପର୍ଯ୍ୟନ୍ତ କବି ବାଲଗାଁ ଦାସ ଜୀବିତଥିଲେ ।

## ଭକ୍ତମାଳିକା

ବାଲଗାଁ ଦାସଙ୍କର ଆଉ ଖଣ୍ଡିଏ ରଚନା 'ଭକ୍ତିମାଳିକା' ନାମରେ ଥିବାର ଦେଖା-ଯାଏ । ପୋଥିଟି ରାଜ୍ୟ ସଂଗ୍ରହାଳୟର ପୋଥିଭଣ୍ଡାରରେ ସଂରକ୍ଷିତ ହୋଇଛି । ଅପ୍ରକାଶିତ

(୧) ମାଦଳାପାଞ୍ଜି (ପ୍ରାଚୀ ସଂସ୍କରଣ) ପୃ: ୭୮ ଓ ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ (ପ୍ରାଚୀ) ପୃଷ୍ଠା—୩୭ ।

ପୋଥିଟିରେ ତେରଟି ଅଧ୍ୟାୟ ରହିଛି । ଆଲୋଚକ ତଥା ପାଠକମାନଙ୍କ ଜିଜ୍ଞାସାର ପରିପୂରଣ ଲାଗି ଅଧ୍ୟାୟଗୁଡ଼ିକର ସାରାଂଶ ଏଠାରେ ପ୍ରଦତ୍ତ ହେଲା—

ପ୍ରଥମ ଅଧ୍ୟାୟର ଆରମ୍ଭରେ ପଞ୍ଚସଖା ଅଚ୍ଛବଡ଼ ଜଗନ୍ନାଥ, ଯଶୋବନ୍ତ, ବଳରାମ, ଅଚ୍ୟୁତ ଓ ଅନନ୍ତ ଦାସଙ୍କ ମନ୍ତ୍ରଯନ୍ତ୍ର ଉପାସନା ଓ ସେମାନଙ୍କ ସାଧନା ସମ୍ପର୍କରେ କହିବା ଲାଗି ପାଠକମାନଙ୍କ ଆଗରେ ନିବେଦନ କରିଛନ୍ତି—

"କହନ୍ତି ବାଲିଗାଁ ଦାସ ଶୁଣିମା ଗୋସାଇଁ ।
ଭକ୍ତଙ୍କ ଜନ୍ମଚରିତ କହିବା ବୁଝାଇ ॥
ଶ୍ରୀ ଅଚ୍ଛବଡ଼ ଯଶୋବନ୍ତ ନାମ ବଳରାମ ।
ଅଚ୍ୟୁତ ଅନନ୍ତ ଶିଶୁ ପଞ୍ଚ ଶାଖା ଜାଣ ॥
ମନ୍ତ୍ରଯନ୍ତ୍ର ଉପାସିକ ଉପଦେଶ ଧାମ ।
ପ୍ରଣାଳୀ ବିଳାସ କରି କହିବା ଉପାମ ॥"

(ଭକ୍ତମାଳିକା, ରାଜ୍ୟ ସଂଗ୍ରହାଳୟ ନକଲ—ପ୍ରଥମ ଅଧ୍ୟାୟ)

ଏଠାରେ ପ୍ରସଙ୍ଗକ୍ରମେ କୁହାଯାଇପାରେ ଯେ, ପଞ୍ଚସଖାଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ଓଡ଼ିଶାର ଜଣେ ଦୁ'ଜଣ ଆଲୋଚକ ସନ୍ଦେହ ପ୍ରକାଶ କରି ଆଲୋଚନା କରିଛନ୍ତି । ଖୁବ୍ ସମ୍ଭବତଃ ସେମାନେ ଏ' ଧରଣର ପୋଥି ପାଠ ନ କରି, କେବଳ ନିଜର ଅନୁମାନ ଅନୁସାରେ ଏପ୍ରକାର ଅବାନ୍ତର ମତ ପୋଷଣ କରନ୍ତି । କାରଣ ଭକ୍ତକବି ବାଲିଗାଁ ଦାସଙ୍କର ପ୍ରସ୍ତୁତ ରଚନାରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ, ତାଙ୍କ ସମୟରେ ଜଗନ୍ନାଥ ଦାସ ଆଦି ପଞ୍ଚସଖାଙ୍କ ପ୍ରସିଦ୍ଧି ଭକ୍ତ-ସମାଜରେ ରହିଥିଲା ଏବଂ ସେହି ସଖାବୃନ୍ଦ ସାଧାରଣ ଜନତାର ଆଦରଣୀୟ ହୋଇପାରିଥିଲେ ।

ତପୂରେ କବି ଦଶାବତାର ସ୍ତୁତି କରିଛନ୍ତି । ଶ୍ରୀ ଜୟଦେବଙ୍କ 'ଗୀତଗୋବିନ୍ଦ' ରଚନା ପରେ ପରେ, ଓଡ଼ିଶାରେ ଶ୍ରୀଜଗନ୍ନାଥ ମହାପ୍ରଭୁ ଦଶାବତାରୀ ରୂପେ ପ୍ରସିଦ୍ଧି ଲାଭ କରିଥିଲେ । ତେଣୁ କବି ଶ୍ରୀଜଗନ୍ନାଥଙ୍କର ଜଣେ ଅନନ୍ୟ ଭକ୍ତ ହୋଇଥିବାରୁ ସେ 'ଭକ୍ତମାଳିକା' ପୁସ୍ତକର ଆରମ୍ଭରେ ଦଶାବତାର ସ୍ତୁତି ପ୍ରଣୟନ କରିଛନ୍ତି ।

"ନମସ୍ତେ ବାସୁଦେବାୟ ନମସ୍ତେ ମୀନରୂପ ।
ନମସ୍ତେ କୂର୍ମରୂପ ବରାହ ନୃସିଂହ ସ୍ୱରୂପ ॥
ନମସ୍ତେ ବାମନରୂପ ପ୍ରଶୁରାମ ଧାରୀ ।
ନମସ୍ତେ ଶ୍ରୀରାମ ଲକ୍ଷ୍ମଣ ସୀତା ଅବତାରୀ ॥
ହଳୀ ରାମ ବଳୀ ରାମ ଶରଣ ତୋହର ।
କଳଙ୍କି ରୂପକୁ ମୋର କୋଟି ନମସ୍କାର ॥"

ଭକ୍ତଙ୍କ ସ୍ତୁତିରେ ମୁଗ୍ଧ ହୋଇ ଶ୍ରୀଜଗନ୍ନାଥ ବାଲିଗାଁ ଦାସଙ୍କ ଆଗରେ ଉପସ୍ଥିତ ହୋଇ ସ୍ମରଣ କରିବାର କାରଣ ଜିଜ୍ଞାସା କଲେ । ତହୁଁ ଦାସେ କହିଲେ—"କାଲି

ପଞ୍ଚସଖାଗଣ ମୋ' ଠାକୁ ଆସିବା ଲାଗି କହିଛନ୍ତି । ମୁଁ ଅଧମ ମୂର୍ଖ, ସେମାନଙ୍କ ତୁଳନାରେ ନିତାନ୍ତ ତୁଚ୍ଛ; ତେଣୁ ସେମାନଙ୍କ ସହିତ କିପରି ବ୍ୟବହାର କରିବି ଏବଂ ସେମାନଙ୍କ ପ୍ରଶ୍ନର କି ଉତ୍ତର ଦେବି, ମୋତେ କହିବା ହେଉ ।"

ଭକ୍ତର ଆର୍ତ୍ତିକାକୁସ୍ତି ଶୁଣି ପ୍ରଭୁ ନୀଳଗିରିବିହାରୀ କହିଲେ—

"ଶ୍ରୀହରି ବୋଲନ୍ତି ଦାସେ କହିବା ବିଗ୍ଭର ।
ତୁମ୍ଭର ଦାସ ମନକୁ ବଡ଼ିବେ ସେ ଭକ୍ତ ବାଦୀରେ ବିଗ୍ଭର ॥
ଶ୍ରୀଯନ୍ତ୍ରକୁ ଭେଦି ଠାକୁରାଣୀ ଯନ୍ତ୍ର କହି ବୋଲିବେ ଆଗର ।
ତୁହି ଯେବେ କିସ ବିଗ୍ଭର କରିବୁ କି ପାଠ କହିବୁ ତାଙ୍କୁ ।
ସେ ପଞ୍ଚ ଶାଖା ଦେହୁ ଜନମ ବାକ୍ୟଦେବୀ ଯାହା ତାଙ୍କୁ ॥"

(ଭ. ମା. ପ୍ରଥମ ଅଧ୍ୟାୟ)

ବାଲିଗାଁ ଦାସେ ଭକ୍ତିବଳରେ ମହାପ୍ରଭୁଙ୍କୁ ଶ୍ରୀନୀଳକନ୍ଦରରୁ ନିଜ କୁଡ଼ିଆ ମଧ୍ୟକୁ ଘେନିଆସି ଥିବାରୁ, ମନରେ ଅପାର ଆନନ୍ଦ ଲଭିକରି ନିଜର ଦୀନତା ପ୍ରକାଶ କରି କହିଲେ—

"କହନ୍ତି ବାଲିଗାଁ ଦାସେ ଶୁଣିମା ହେ ପ୍ରଭୁ ମୁଁ କିସ କହିବି ମୂଢ଼,
ସେ ତୁମ୍ଭର ଯେଣୁ ଭକତବୃନ୍ଦ ସେ ସବୁରି ପ୍ରକାରେ ବଡ଼ ।
ଅତି ବଡ଼ ଜଗନ୍ନାଥେ ମୋର ଗୁରୁଦେବ ଅଟନ୍ତି ଜାଣ ।
ତାଙ୍କ ଚରଣକୁ ଶରଣ ମାଗିବି କହିବେ ଯାହା ପ୍ରମାଣ ।
ଆହୁରି କଥାଏ ମନରେ ଅଛଇ ଡାକିବି ଯେବେ ତାହାଙ୍କୁ ।
କମଳା ବିମଳା ଦୁଇଜଣେ ମୋର ଶାଖୀ ଯେ ମୋତେ ହେବାକୁ ।
ଅଷ୍ଟସଖୀଗଣ ମୋହୋଇଛି ଟାଣ ଡାକିଲିମାହେ ଶୁଣିମେ ।
ଚଉଷଠୀ ଦାତା ଚଞ୍ଚଳାରମଣ ସେ ଯେବେ ମୋ ହୃଦେ ଥିବେ ।"

ସେ କେବଳ ଏତିକ ଶ୍ରୀମୁଖରେ ମାଗୁଣିକରି ନୀରବ ହେଲେ । ତହୁଁ ଶ୍ରୀଜଗନ୍ନାଥ ବାଲିଗାଁ ଦାସଙ୍କ ମନ ଜାଣି କହିଲେ—କାଲି ପଞ୍ଚସଖା ମୋତେ ନୀଳଚକ୍ରରେ ଲୁଚାଇ ତୁମର ମନ ବଢ଼ାବାପାଇଁ ଏଠାକୁ ଆସିବେ । ତୁମକୁ ଯାହା ଭଲ ଦ୍ରବ୍ୟ ମିଳିବ, ତାହା ତୁମେ ସଂଗ୍ରହକରି ରଖିବ ।

ସେହି ପ୍ରସଙ୍ଗରେ ଶ୍ରୀଜଗନ୍ନାଥ ଆହୁରି ମଧ୍ୟ କହିଲେ ଯେ, ପଞ୍ଚସଖାଗଣ ବାଲିଗାଁ ଦାସଙ୍କୁ ମନ୍ତ୍ରର ଗୁପତ ଗହନ କଥା ପଚାରିବେ ଏବଂ ତାଙ୍କ ହୃଦୟରେ 'ପ୍ରେମରୂପା ଅଙ୍ଗ' ଦେଖିବା ଲାଗି ଆଗ୍ରହ ପ୍ରକାଶ କରିବେ । ସେମାନେ କ୍ଲୀଁ, ହ୍ରୀଁ, ଶ୍ରୀଁ, ଓଁ ର ବିଗ୍ଭର ଜାଣିବାକୁ ଚାହିଁବେ । ଆହୁରି ବିଶ୍ଳେଷଣ କରି ଶ୍ରୀଜଗନ୍ନାଥ କହିଲେ ଯେ ଶିଶୁ ଅନନ୍ତ 'ଅନାଦି ସୃଷ୍ଟି ବିଗ୍ଭର', ଯଶୋବନ୍ତ 'ରାଧାଅଙ୍କ' ବିଷୟରେ ସ୍ୱତନ୍ତ୍ର ପ୍ରଶ୍ନ ପଚାରିବେ; କିନ୍ତୁ 'ଶ୍ରୀଜଗନ୍ନାଥ-ଯେକାକ୍ଷର ବ୍ରହ୍ମ' ବୋଲି ଉତ୍ତର ଦେବାଲାଗି, ପ୍ରଭୁ ବାଲିଗାଁ ଦାସଙ୍କୁ ଉପଦେଶ ଦେଲେ ।

ପରଦିନ ପ୍ରଭାତରୁ ଜଗନ୍ନାଥ, ବଳରାମ, ଅଚ୍ୟୁତ, ଯଶୋବନ୍ତ, ଅନନ୍ତ ଓ ହରି ଦ୍ୱାରିକା ବାଲ୍ୟଗାଁ ଦାସଙ୍କ ମଠରେ ପହଞ୍ଚି ଡାକପକାଇଲେ । ସେ ଡାକ ଶୁଣି ଦାସିଆ ପାଣିର ଜଳ ଆଣି ସେମାନଙ୍କ ପାଦ ଧୌତକରି ବଳରାମ ଦାସଙ୍କୁ ଜଳମଧ୍ୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର 'ଦଶ ଅବତାର' ଦର୍ଶନ କରାଇଲେ । ତହୁଁ ପଞ୍ଚସଖାଗଣ ବାଲ୍ୟଗାଁ ଦାସଙ୍କୁ ଅନ୍ୟାନ୍ୟ ପ୍ରଶ୍ନ ପଚାରିବା ସଙ୍ଗେ ସଙ୍ଗେ "ଶ୍ରୀଜଗନ୍ନାଥ ବର୍ତ୍ତମାନ କେଉଁଠି ଅଛନ୍ତି ?" ବୋଲି ପ୍ରଶ୍ନକଲେ । ତହୁଁ ଦାସେ ବିମର୍ଷ ମନରେ କହିଲେ—"ପଞ୍ଚସଖାଗଣ ! ତୁମ୍ଭେମାନେ ପ୍ରଭୁଙ୍କୁ ନୀଳଚକ୍ରରେ ବସାଇ ଆସିଛ । ଶ୍ରୀମନ୍ଦିରର ରତ୍ନସିଂହାସନ ବର୍ତ୍ତମାନ ଖାଲି ପଡ଼ିଛି । ଖରାରେ ବସିଥିବାରୁ ପ୍ରଭୁଙ୍କ ଅଙ୍ଗରୁ ଶ୍ରମଝାଳ ଝରିପଡ଼ୁଛି ।" ଏହା ଶୁଣି ପଞ୍ଚସଖାଗଣ ବାଲ୍ୟଗାଁ ଦାସଙ୍କ ଜ୍ଞାନ ଓ ଭକ୍ତିରେ ଆଶ୍ଚର୍ଯ୍ୟ ହୋଇଗଲେ । ତତ୍‌ପରେ ଶ୍ରୀ ଜଗନ୍ନାଥ ଦାସେ ଗୁରୁଭାବରେ ଦାସିଆଙ୍କୁ 'ରାଧା ପ୍ରେମରୂପା ଭକ୍ତିତତ୍ତ୍ୱ' ଶିକ୍ଷାଦେଲେ । ଚଉଷଠି ମହନ୍ତ ଓ ପଞ୍ଚସଖାମାନେ ମିଳି ଦାସିଆଙ୍କୁ ଶ୍ରେଷ୍ଠ ଭକ୍ତ ରୂପେ ଶାଢ଼ି ବାନ୍ଧିଦେଲେ ।

## ଦ୍ୱିତୀୟ ଅଧ୍ୟାୟ

ଭକ୍ତ ପରୀକ୍ଷାରେ ଦାସିଆ ଉତ୍ତୀର୍ଣ୍ଣ ହୋଇଗଲେ ଏବଂ ପ୍ରଭୁ ଜଗନ୍ନାଥ ତାଙ୍କ ପ୍ରତି ଅତ୍ୟନ୍ତ ପ୍ରୀତହୋଇ ଜ୍ଞାନମାର୍ଗର ଗହନତତ୍ତ୍ୱ ଠିକ୍ ଠିକ୍ କରି ବୁଝାଇଦେଲେ । ତହୁଁ ଦାସିଆ ଶ୍ରୀ ଜଗନ୍ନାଥ ଦାସ ଓ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ଶ୍ରୀ ଜଗନ୍ନାଥଙ୍କୁ ପଚାରିଲେ । ସେ ପ୍ରଥମେ ଦାସିଆଙ୍କ ଜନ୍ମ ବିବରଣୀ ପ୍ରକାଶ କରି କହିଲେ—

"ପୂର୍ବେ ତୋହର ଜନ୍ମ କହିବାକ କର୍ମ କାହୁଁ ତୁ ହୋଇଲୁ ଜାତ,
ଶୂଦ୍ରକୁଳେ ତୋର ଥିବ ଜନ୍ମ ଗଲା ଦସ୍ୟୁରେ ବସିଲା ଚିତ୍ତ ।
ଦ୍ୱିତୀୟା ନାମେ ଫେଡ଼କାର ଯେବା ଏକ ତା' ଘରେ ହୋଇଲା ସତେ ।
ବ୍ରାହ୍ମଣ ଘରେ ତୁ ଜନ୍ମ ହୋଇଥିଲୁ ଥିବ ଜନ୍ମ ପରିଯନ୍ତେ ।
ପୂଜାରେ ତୁମ୍ଭର ଅମାଦ ହୋଇଲା ପାପ ଲାଗିଲା ଯୁଗତେ ।
ତେଣୁ କରି ତୁମ୍ଭେ ବାଉରି ହୋଇଲ ହୀନକର୍ମ କଲ ଯେତେ ।"

ବାଉରିକୁଳରେ ଜନ୍ମହୋଇ ସେ ପ୍ରଭୁଙ୍କ ନାମ ଚିନ୍ତାରେ ମନ ଦିଅନ୍ତେ, ତା'ଠାରେ ମହାଲକ୍ଷ୍ମୀଙ୍କ ଦୟା ହେଲା । ସେଇଥିପାଇଁ ସେ ପ୍ରଭୁ ଜଗନ୍ନାଥଙ୍କର ଅଶେଷ କରୁଣା ଲାଭ କରିପାରିଲେ ।

ଶ୍ରୀଜଗନ୍ନାଥ ଦାସଙ୍କ ଜନ୍ମ ସମ୍ବନ୍ଧରେ ବ୍ୟାଖ୍ୟାନକରି ପ୍ରଭୁ ଜଣାଇଲେ ଯେ, ଅତିବଡ଼ୀ ଦାସେ ଠାକୁରାଣୀଙ୍କର ପ୍ରେମରୂପା ଅଙ୍ଗରୁ ଜାତ । ସେ ଅନାମ ପଣ୍ଡା ବ୍ରାହ୍ମଣର ପୁତ୍ରରୂପେ ଜାତ ହୋଇଥିଲେ ହେଁ ରାଧା-ଅଂଶରେ ତାଙ୍କର ଶରୀର ନିର୍ମିତ ହୋଇଛି । ଅନ୍ୟାନ୍ୟ ଭକ୍ତମାନେ ତପସାଧନାରେ ଆକୃଷ୍ଟ ହୋଇ ଭିନ୍ନ ଭିନ୍ନ ତୀର୍ଥକୁ ଗମନ କରିଥିଲେ ହେଁ, ଶ୍ରୀ ଜଗନ୍ନାଥ ଏକାଗ୍ରତାର ସହିତ ଶ୍ରୀନୀଳକନ୍ଦରରେ ଥାଇ, ଅତିବଡ଼ ହୋଇପାରିଲେ ।

ସେ ସ୍ତ୍ରୀ ନୁହନ୍ତି କିମ୍ବା ପୁରୁଷ ନୁହନ୍ତି । ବାଙ୍କି ମୁହାଣରେ ରହି ଶ୍ରୀ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଧ୍ୟାନକରି ମହାମାନ୍ୟତ ହୋଇପାରିଛନ୍ତି ।

## ତୃତୀୟ ଓ ଚତୁର୍ଥ ଅଧ୍ୟାୟ

ତୃତୀୟ ଅଧ୍ୟାୟରେ ବାଲିଗାଁ ଦାସ ହରିଦାସଙ୍କ ଆଗରେ ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ନିଜର ଜ୍ଞାନ ବଖାଣିଛନ୍ତି ଏବଂ ଅତି ବିନୟ ଭାବରେ ପ୍ରକାଶ କରି କହିଛନ୍ତି—

"ବନ୍ଧୁବାନ୍ଧବ ମୋର କେହି ନାହାନ୍ତି, ମୋ ବନ୍ଧୁ ପରମବ୍ରହ୍ମ,
ମାତା ପିତା ମୋର ଲକ୍ଷ୍ମୀନାରାୟଣ ଗୁରୁ ଜଗନ୍ନାଥ ନାମ ।।
ତାଙ୍କଠାରୁ ନାମ ଦୀକ୍ଷା ମୁଁ ପାଇଲି ହେତୁ କରି ମୁହିଁ ତୋତେ ।
ଚତୁର୍ବର୍ଗଦାତା ମନ୍ତ୍ରରେ ବିଜୟେ ଆଗେ ମିଳିଲେ ଅଚ୍ୟୁତେ,
ଶ୍ରୀ ଅତିବଡ଼ ଗୁରୁଦେବ କହିଛନ୍ତି ଭଜୁଥିବୁ ଏକାକ୍ଷର ।
ମଥୁରା ଦ୍ୱାରକା ଅଯୋଧ୍ୟା ସହିତେ ବୃନ୍ଦାବନ ତୀର୍ଥ ବାର ।।
ଏମନ୍ତେ ଆଜ୍ଞା ଶ୍ରୀ ଅତିବଡ଼ ଗୁରୁ କହିଲେ ମୋତେ ଗୁପତେ,
କାହିଁକି ନଗଲି ମନରେ ସାଧିଲି ଗୁରୁ ଆଜ୍ଞା ଦୃଢ଼ ଚିତ୍ତେ ।।

× × ×

ଶ୍ରୀ ଗୁରୁଦେବଙ୍କ ନାମ ଦୀକ୍ଷା ମୋର ମନ୍ତ୍ରେ ଭେଦାଇବି ନେଇ,
ମନ୍ତ୍ର ଯନ୍ତ୍ର ତନ୍ତ୍ର ଏକା ଅଙ୍ଗେ ଭେଦ ମନ୍ତ୍ର ଦୀକ୍ଷା ଥିବ ତହିଁ ।।"

ଶ୍ରୀ ଗୁରୁଙ୍କ କୃପାରୁ ସାଧନାରେ ସିଦ୍ଧ ହୋଇ ବାଲିଗାଁ ଦାସ ଶ୍ରୀ ଜଗନ୍ନାଥଙ୍କୁ ଭକ୍ତି-ଡୋରରେ ବାନ୍ଧିପାରିଲେ ଏବଂ ତାଙ୍କଠାରୁ ପ୍ରଭୁଙ୍କ ଲୀଳାଖେଳା ତଥା ଜଡ଼ ଜଗତର ଗହନତତ୍ତ୍ୱ ସମ୍ବନ୍ଧରେ ଶିକ୍ଷାଲାଭକଲେ । କେବଳ ସେତିକି ନୁହେଁ, ନାମ ଭଜନର ମାହାତ୍ମ୍ୟ, ବ୍ରହ୍ମପୁରୁଷର ଭଜନ, ଉତ୍କଳ ଦେଶର ଭକ୍ତମାନଙ୍କ ନାମ ଓ ଚରିତ ସମ୍ବନ୍ଧରେ ଶ୍ରୀହରି ତାଙ୍କୁ ବୁଝାଇଥିଲେ ।

## ପଞ୍ଚମ ଅଧ୍ୟାୟ

ପଞ୍ଚମ ଅଧ୍ୟାୟରେ ଅନ୍ୟାନ୍ୟ ଭକ୍ତଙ୍କ ନାମ, ଅତିବଡ଼ ଗୋସାଇଁଙ୍କ ସହଯୋଗିବୃନ୍ଦ ପ୍ରାଚୀତଟର ସିଦ୍ଧମଠସ୍ଥ ଯୋଗୀ ତଥା ସେହି ପ୍ରସଙ୍ଗରେ ପ୍ରଭୁ ଜଗନ୍ନାଥ, ଦିବାକର, ଉଦ୍ଧବ, ମାଧବ, କରୁଣାକର, ଶ୍ୟାମସୁନ୍ଦର, ନିଧି ଦାସ, ଅର୍ଜ୍ଜୁନ ଦାସ ପ୍ରଭୃତି ଭକ୍ତଙ୍କ ନାମ ଓ ଉତ୍କଳର କେତେଜଣ ରାଜର୍ଷିଙ୍କ ନାମ କହିବା ସଙ୍ଗେ ସଙ୍ଗେ, ଦେଶରେ ଘଟିଥିବା ଅନ୍ୟାୟ ଅତ୍ୟାଚାର ତଥା ତା'ର ପ୍ରତିକାର ସମ୍ବନ୍ଧରେ ବ୍ୟାଖ୍ୟାନ କରିଛନ୍ତି ।

## ଷଷ୍ଠ ଅଧ୍ୟାୟ

ଷଷ୍ଠ ଅଧ୍ୟାୟରେ, ପୂର୍ବଦ୍ୱାରର ଯାଜପୁର ପର୍ଯ୍ୟନ୍ତ ଯେତେ ଭକ୍ତ ଯେଉଁଠାରେ ଜନ୍ମଗ୍ରହଣ କରିଛନ୍ତି, ସେମାନଙ୍କ ଗ୍ରାମ, ପିତା ମାତାଙ୍କ ନାମ ଶ୍ରୀହରି ଗୋଟି ଗୋଟିକରି ବାଲିଗାଁ ଦାସଙ୍କ

ଆଗରେ ପ୍ରକାଶ କରିଛନ୍ତି । ଏହି ପ୍ରସଙ୍ଗରେ ଖ୍ରିମ ଦାସ, ବିକ୍ରମ ଦାସ, ଦ୍ୱିଜ ଅନନ୍ତ, ମହାଦେବ ଦାସ, ରଘୁ ଦାସ, ସଦାନନ୍ଦ ଦାସ ପ୍ରଭୃତି ଭକ୍ତମାନଙ୍କର ବିବରଣୀ ବର୍ଣ୍ଣିତ ହୋଇଛି ।

## ସପ୍ତମ ଅଧ୍ୟାୟ

ସପ୍ତମ ଅଧ୍ୟାୟରେ, ଦ୍ୱାପର ଯୁଗର ଷୋଳ ସହସ୍ର ଗୋପୀ କଳିଯୁଗରେ କେଉଁ କେଉଁ ଭକ୍ତରୂପେ ଜନ୍ମଗ୍ରହଣ କରିଛନ୍ତି, ସେମାନଙ୍କ କାହାଣୀ, ବିଭିନ୍ନ ଦେବତା କେଉଁ କେଉଁ ଭକ୍ତରୂପେ ଜନ୍ମଗ୍ରହଣ କରିଛନ୍ତି ତାହାର ବିବରଣ, ପଞ୍ଚପାଣ୍ଡବମାନଙ୍କ କଳିଯୁଗର ଜନ୍ମ, ହନୁମାନ ଆଦି ଭକ୍ତମାନଙ୍କ କଳି ଯୁଗରେ ଜନ୍ମ ବିବରଣ ବ୍ୟାଖ୍ୟାନ କରି ଭକ୍ତକବି ବାଲିଗାଁ ଦାସ ଏ ଅଧ୍ୟାୟଟି ଶେଷକରିଛନ୍ତି ।

## ଅଷ୍ଟମ ଅଧ୍ୟାୟ

ଅଷ୍ଟମ ଅଧ୍ୟାୟରେ ଖଣ୍ଡଗିରିରେ ଶିଶୁ ଅନନ୍ତଙ୍କର ଅଂଶରେ ଯେଉଁ ଭକ୍ତମାନେ ଜନ୍ମ ହୋଇଛନ୍ତି, ସ୍ୱବର୍ଣ୍ଣରେଖା, ଯାଜନଗର, ଅମ୍ବରେଶ୍ୱର, ଆଠଗଡ଼, ବାଲିବଣି ପ୍ରଭୃତି ସ୍ଥାନରେ ଯେଉଁ ଭକ୍ତମାନଙ୍କର ଆସ୍ଥାନ ତଥା ତ୍ରେତୟା ଯୁଗରେ ସୁଗ୍ରୀବ, ଅଙ୍ଗଦ, ଜାମ୍ବୁବାନ ପ୍ରଭୃତି ଭକ୍ତମାନେ କଳିଯୁଗରେ ଯେଉଁ ଯେଉଁ ସ୍ଥାନରେ ଜନ୍ମଗ୍ରହଣ କରି ସାଧନାରେ ରତ ଅଛନ୍ତି, ସେମାନଙ୍କ ବିବରଣ, ଏ ଅଧ୍ୟାୟର ପ୍ରଧାନ ପ୍ରତିପାଦ୍ୟ ବିଷୟ ।

## ନବମ ଅଧ୍ୟାୟ

ନବମ ଅଧ୍ୟାୟରେ ଭକ୍ତକବି ବାଲିଗାଁ ଦାସ ପ୍ରଭୁ ଜଗନ୍ନାଥଙ୍କଠାରେ ବିନୀତ ପ୍ରାର୍ଥନା କରି କହିଛନ୍ତି—

ଅତି ବଡ଼ ଗୁରୁ ଚରିତ । କହିବା ହରି ପଦ୍ମନେତ୍ର ॥
ଯେହ୍ନାଙ୍କ ସଙ୍ଗେ ସାଧୁ ଯେତେ । କାହିଁ ଅଛନ୍ତି କହ ମୋତେ ॥
ଯେହ୍ନାଙ୍କ ସଙ୍ଗେ ବାଦୀ କେହୁ । ଫେଡ଼ି କହିବା ମହାବାହୁ ॥
ନାମାଧି ହୋଇ ସାଧୁ କେତେ । କେ କଳିଯୁଗ ଜନ୍ମ ମତେ ॥
କେଉଁ ସ୍ଥାନ କେତେ ବିଶ୍ରାମ । କହିବା ହରି ନାରାୟଣ ॥
କେତେ ଉତ୍ପତ୍ତି ମୃତ୍ୟୁ କେତେ । କହିବା ହରି ଶୁଦ୍ଧଚିତ୍ତେ ॥

ଭକ୍ତ ବାଲିଗାଁ ଦାସଙ୍କ ଜିଜ୍ଞାସାମତେ ପ୍ରଭୁ ଭକ୍ତମାନଙ୍କ ଚରିତ ବ୍ୟାଖ୍ୟାନ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ରାଜ୍ୟରେ ମହାବିପ୍ଳବ ହେବା ସମ୍ବନ୍ଧରେ ସୂଚନା ଦେଇଛନ୍ତି । ସେହି ପ୍ରସଙ୍ଗରେ ଓଡ଼ିଶାର ବିଭିନ୍ନ ପୀଠେଶ୍ୱରୀ ଦେବୀଗଣ କପରି ସଂଗ୍ରାମରେ ଯୋଗଦେଇ ସଂହାରଲୀଳା ଚଳାଇବେ, ତା'ର ଧର୍ମୀୟକ ସୂଚନା ଦେଇଛନ୍ତି । ସେହି ପ୍ରସଙ୍ଗରେ କବି ନୀଳ-ମାଧବ ଦୁର୍ଗା, ହେଙ୍ଗୁଳା, ଝଙ୍କଡ଼େଶ୍ୱରୀ ସାରଳା, ସାରଳା, ଅମ୍ବିକା, ଜଳ୍ଛାପୁରର ଖୋକାଇ ଗ୍ରେବକାଇ ଓ ଅନ୍ୟାନ୍ୟ ସ୍ଥାନର ମଙ୍ଗଳା, କୋଡାମଚଣ୍ଡୀ, କାଳିକା, ବରୁଣାଇ, ଅଗ୍ନି ସେନୀ

ସାତ ଭଉଣୀ, ଭଦ୍ରକାଳୀ, ଅଠରଗଡ଼ର କାତ୍ୟାୟନୀ, ଝାଡ଼ଖଣ୍ଡର ବାଲୁକେଶ୍ୱରୀ, ଜାମଲା, ମହାକାଳୀ, ଉଲଲା, ଢଲୁକାଇ, ପୋଡ଼ବୁନା, ପୋଡ଼ଳୀ, ଭଦ୍ରଗଉରୀ, ଦୁର୍ଗତି ଚର୍ମିକା, ବିକଟାଳୀ ପ୍ରଭୃତି ଦେବୀମାନେ ମିଳି କପଟ ଗୋଳରେ ଯୋଗଦେବେ ତା'ର ଏକ ବିବରଣୀ ଦେଇଛନ୍ତି । ଭକ୍ତମାନେ କୁଳର ବାହନ ସ୍ୱରୂପ ରହି ଦେବୀଙ୍କ ଖର୍ପରେ ବିନାଶ ହେବେନାହିଁ ବୋଲି ପ୍ରଭୁ ଶ୍ରୀମୁଖବାଣୀ ଶୁଣାଇଛନ୍ତି ।

ଏହି ସମୟରେ ବୀରକେଶରୀ ଦେବଙ୍କ ସମ୍ବନ୍ଧରେ କବି ଗୋଟିଏ ମାତ୍ର ଉଲ୍ଲେଖ କରି କହିଛନ୍ତି—

ବୀର କେଶରୀ ଦେବ ଜାଣ । ବଂଶ୍ୟାଂଶରେ ହୋଇ ଜନ୍ମ ॥
ସେହି ରାଜାଠାରୁ ଗୋଳକୁଣ୍ଡା । ବହୁତ ଜନ ହେବେ ଗୁଣ୍ଡା ॥
ଗୋଳ ଲଗିବ ଘରେ ଘରେ । ନୃପତି ପଳାଇବ ଡରେ ॥
କଳିଙ୍ଗ ଦେଶ ମରହଟ୍ଟ । ଓଡ଼ିଶା ଭାଜିବ ସେ ନଷ୍ଟ ॥

ଏହି ଗୋଳ ସମୟରେ ରାଜ୍ୟରେ ଅରାଜକତା ସୃଷ୍ଟି ହେବ ଏବଂ କେହି କାହାକୁ ନମାନି ମନ ଇଚ୍ଛାରେ ଅତ୍ୟାଚାର କରିଯିବେ ବୋଲି କବି ଭବିଷ୍ୟତବାଣୀ ଶୁଣାଇଛନ୍ତି । ସେହି ସମୟରେ ପ୍ରଭୁ କଳ୍କି ଅବତାର ହୋଇ ଭାଇ ହଳଧର ସହିତ ବୃଦ୍ଧି ଅତ୍ୟାଚାରୀଙ୍କୁ ବିନାଶ କରିବା ସଙ୍ଗେ ସଙ୍ଗେ ଶାନ୍ତି ସ୍ଥାପନ କରିବେ ।

## ଦଶମ ଅଧ୍ୟାୟ

ଦଶମ ଅଧ୍ୟାୟ ଆରମ୍ଭରେ ପ୍ରଭୁ ଜ୍ଞାନ ସମ୍ବାଦ ଶୁଣାଇ କହିଛନ୍ତି—

କହନ୍ତି ଦେବ ନାରାୟଣ । ଶୁଣ ହେ ଦାସେ ସତ୍ୟମାଣ ॥
ଗୁପତ ରସ ବାଧି ବାଣୀ । ଏ ଟୀକା ଭକ୍ତରସ ବାଣୀ ॥
ଭକ୍ତମାଳିକା ମୂଳଟୀକା । ବ୍ରହ୍ମାଣ୍ଡ ରୋମ ମୂଳେ ଲେଖା ॥
ବିରାଟ ଦେହେ ଯେତେ ଛନ୍ତି । ସହିଁ ଯେମନ୍ତ ଜନ୍ମ ହୋନ୍ତି ॥

× × ×

ଜ୍ଞାନଲୋଚନେ ଦେବା କହି । ତୋହୋର ମନ ସ୍ଥିର ହୋଇ ॥

ପ୍ରଭୁ ବାଲିଗାଁ ଦାସଙ୍କ ଆଗରେ ଭକ୍ତିସିଦ୍ଧାନ୍ତ, ମନ୍ତ୍ରଯନ୍ତ୍ର ବଖାଣ, ନାମ ମାହାତ୍ମ୍ୟ ଓ ତଦ୍‌ବ୍ୟତୀରେକେ ଲୋକମାନଙ୍କର ଅଧୋଗତି ସମ୍ପର୍କରେ ସୂଚନା ଦେଇଛନ୍ତି ।

## ଏକାଦଶ ଅଧ୍ୟାୟ

ଏକାଦଶ ଅଧ୍ୟାୟରେ ବାଲିଗାଁ ଦାସ ପ୍ରଭୁଙ୍କଠାରୁଁ ଆହୁରି ଅଧିକ କିଛି ଜ୍ଞାନ ଆହରଣ କରିବା କାମନାରେ ପଚାରିଛନ୍ତି—

ଠିକ ଜ୍ଞାନୀଙ୍କ ନାମ ମୋତେ । କହିବା ହେଉ ପ୍ରଭୁ ଚିତେ ॥
ଚୌଷଠି ଜଣେ କେହୁ ଲେଖା । ତାହା କହିବା ପ୍ରଭୁ ସେବା ॥

ଗୋପ ମଥୁରା ବୃନ୍ଦାବନ । ଅଯୋଧ୍ୟା ଦ୍ୱାରକା ମୋହନ ॥
ଯେତେ କହିଲ ଦଗ ଜାଣ । ଏହାର କେକେ ହୋ ପୁରାଣ ॥

ଭକ୍ତଙ୍କର ଜିଜ୍ଞାସାମତେ ପ୍ରଭୁ ଜଗନ୍ନାଥ ସମସ୍ତ ତଥ୍ୟ ବିଶ୍ଲେଷଣକରି କହିବା ସଙ୍ଗେ ସଙ୍ଗେ 'ଚଉଦ ବ୍ରହ୍ମ ଣ୍ଡ'ର ଭକ୍ତବୃନ୍ଦଙ୍କ ବର୍ଣ୍ଣନା କରିଛନ୍ତି । ତଦ୍ ସଙ୍ଗେ ସଙ୍ଗେ ମଧ ପଞ୍ଚ-ସଖାଙ୍କ ଶିଷ୍ୟ ବା ଭକ୍ତସଂଖ୍ୟାର ଉଲ୍ଲେଖ କରିଛନ୍ତି ।

ଗନ୍ଧର୍ବ ଅଂଶ ସ୍ୱେ ଲେଖିବୁ । ଲକ୍ଷେ ସରୁଷି ଭେଦଥିବୁ ॥
ଯଶୋବନ୍ତ ଅଂଶ ଲକ୍ଷଣ । ଦ'ଲକ୍ଷ ବଳରାମ ପୁଣ ॥
ଶିଶୁ ଅନନ୍ତ ଦୁଇ ଲକ୍ଷ । ଜଗନ୍ନାଥ ଯେ ଷଡ଼ଲକ୍ଷ ॥
ଅଚ୍ୟୁତ ପାଞ୍ଚ ଲକ୍ଷ କହି । ସ୍ୱେରୂପେ ଷୋଳହସ୍ତ ଗୋଇ ॥

× × ×

ଏ ରୂପେ ଚଉଷଠୀ ଜାଣ । ଭକ୍ତମାଳକାରେ ପ୍ରମାଣ ॥
ଚଉଦ ବ୍ରହ୍ମାଣ୍ଡରେ ଭେଦ । ଯେବେ ଅଛନ୍ତି ଭକ୍ତବୃନ୍ଦ ॥
ତୋ ଆଗେ କହିଦେଲି ଫେଇ । ଏଥି ସଂଶୟ କିଛି ନାହିଁ ॥

## ଦ୍ୱାଦଶ ଓ ତ୍ରୟୋଦଶ ଅଧ୍ୟାୟ

ପ୍ରସ୍ତୁତ ଦୁଇଟି ଅଧ୍ୟାୟରେ କଳିଯୁଗରେ ମୁକ୍ତି ପାଇବା ଲାଗି ନାମ ଭଜନ ଏକମାତ୍ର ଉପାୟ ବୋଲି ପ୍ରଭୁ ଭକ୍ତ ଦାସିଆଙ୍କୁ ବୁଝାଇଛନ୍ତି ଏବଂ ଯେଉଁମାନେ ଭକ୍ତମାର୍ଗରେ ନଯାଇ ଭିନ୍ନମାର୍ଗରେ କାଳଯାପନ କରନ୍ତି, କିମ୍ବା ଅନାଚାରମାର୍ଗର ଅନୁସରଣରେ ଦିନ ବିତାନ୍ତି, ସେମାନେ କପରି ନାଶଯିବେ, ତାହା ତନ୍ନତନ୍ନ କରି ବୁଝାଇବା ମାତ୍ରେ, ଭକ୍ତ ବାଲିଗାଁ ଦାସ ପ୍ରଭୁଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣିପାତ କରି ସ୍ତୁତି ଆରମ୍ଭ କରିଛନ୍ତି—

ମସ୍ତକେ ଯୋଡ଼ି ବେନକର । ପଡ଼ଇ ପ୍ରଭୁଙ୍କ ପୟର ॥
ଜୟ ହେ ଶ୍ରୀ ମଧୁସୂଦନ । ନମସ୍ତେ ଦେବ ନାରାୟଣ ॥
ନମସ୍ତେ ଜୟ ଜଗନ୍ନାଥ । ଭରି ନବାରେ ତୋର ଗସ୍ତ ॥

ତତ୍ପରେ ଦାସିଆ ଏ ଜନ୍ମ ଅନ୍ତେ ପୁଣି କେଉଁଠାରେ ସେ ଜନ୍ମଲାଭ କରିବେ ଏବଂ ପ୍ରଭୁଙ୍କ କରୁଣା କପରି ପ୍ରାପ୍ତ ହେବେ, ସେ ସମ୍ବନ୍ଧରେ ଜିଜ୍ଞାସା କରିଛନ୍ତି । କେବଳ ସେତିକି ନୁହେଁ, ପରଜନ୍ମରେ ତାଙ୍କର ଦୀକ୍ଷାଗୁରୁ କିଏ ହେବେ ଏବଂ ଦାସିଆ ଓ ତାଙ୍କ ପତ୍ନୀ ପର-ଜନ୍ମରେ ପୁଣି ପତିପତ୍ନୀରୂପେ ଜନ୍ମ ହେବେ କି ନାହିଁ ସେ ସମ୍ବନ୍ଧରେ ଜାଣିବା ଲାଗି ଆଗ୍ରହ ପ୍ରକାଶ କରିଛନ୍ତି । ତହୁଁ ପ୍ରଭୁ ପ୍ରଥମେ ପଞ୍ଚସଖାଙ୍କ ଜନ୍ମ ବିବରଣ କହି, ତତ୍ପରେ ଦାସିଆ ଓ ତାଙ୍କ ପତ୍ନୀଙ୍କ ପୂର୍ବଜନ୍ମର ଜାତି ଓଁ ନାମ ବ୍ୟାଖ୍ୟାନ କରିବା ସଙ୍ଗେ ସଙ୍ଗେ ଚୌଷଠୀ ମନ୍ତ୍ରର ବୀଜ ବାଲିଗାଁ ଦାସଙ୍କୁ ବୁଝାଇଛନ୍ତି ।

ପ୍ରଭୁ ରତ୍ନସିଂହାସନ ଛାଡ଼ି ଦାସିଆ ଘରେ ବିଜୟ କରିଥିବାରୁ ଭୋଗବେଳେ ବଡ଼-ପଣ୍ଡାଙ୍କ ଚକ୍ଷୁରେ ତାଙ୍କର ପ୍ରତିବିମ୍ବ ପଡ଼ିଲା ନାହିଁ । ତହୁଁ ମନ୍ଦିରରେ ଚହଳ ପଡ଼ିଗଲା ।

ରାଜା ପ୍ରତାପରୁଦ୍ର ଦେବ ଏହା ଜାଣି ପଣ୍ଡା ପଡ଼ିଆରୀମାନଙ୍କୁ ସମୁଚିତ ଦଣ୍ଡ ଦେବା ଲାଗି ବ୍ୟବସ୍ଥା କଲେ ।

ମକର ମାସ ଦ୍ୱାଦଶୀରେ । ବିଜୟେ ବାଲଗାଁ ମନ୍ଦିରେ ॥
ରାବଣ୍ଟି ବିଜେ ଦାମୋଦର । ତିନି ପ୍ରହର ହେଲା ବେଳ ॥
× × ×
ଷାଠିଏ ପୌଟି ଭୋଗମାନ । ଦଇତାପତି କଲେ ପୂର୍ଣ୍ଣ ॥
ପଣ୍ଡା ବସିଲା ଚକ୍ରଧର । ମନ୍ତ୍ର ସୁମରି ସ୍ୱାହା କରି ॥
ଚକ୍ରୁ ଯେ ତୋଳିଣ ଧଇଲା । ପ୍ରଭୁଙ୍କ ଦର୍ଶନ ନୋହିଲା ॥

ଏହି ପ୍ରସଙ୍ଗରେ କବି ବାଲଗାଁ ଦାସ 'ପ୍ରତାପରୁଦ୍ର ଦେବ'ଙ୍କ ନାମ ଠାକୁରରାଜା ରୂପେ ବର୍ଣ୍ଣନା କରିଛନ୍ତି । ଏ ଘଟଣା ନୃପତି କର୍ଣ୍ଣଗୋଚର ହୁଅନ୍ତେ, ସେ ପଣ୍ଡା ପଡ଼ିଆରୀ-ମାନଙ୍କୁ ବନ୍ଦୀ କରି, ପରଦିନ ସେମାନଙ୍କ ବିଚାର ହେବ ବୋଲି ସ୍ଥିରକଲେ । ପ୍ରଭୁ ଏହା ଜାଣିପାରି ନୃପତିଙ୍କୁ ସ୍ୱପ୍ନାଦେଶ ଦେଇ କହିଲେ—

ଦୟାସାଗର ନରହରି । ରାଜା ଶୟନ ସ୍ଥାନେ ମିଳି ॥
ସପନେ କହିଲେ ରାଜାଙ୍କୁ । କମ୍ପାଇ ଚିନ୍ତା ତୋ ମନକୁ ॥
ପର ଅପର ମୋର ନାହିଁ । ଭାବିଲା ଭୃତ୍ୟ ସଙ୍ଗେ ଧାଇଁ ॥
ବାଉରି କୁଳେ ତାର ଜନ୍ମ । ବାଲଗାଁ ଦାସ ବୋଲି ନାମ ॥
ତାର ମନ୍ଦିରେ ଥିଲି ମୁହିଁ । ଭଗତ ଭାବେ ବନ୍ଦୀ ହୋଇ ॥
× ×
ପ୍ରତାପରୁଦ୍ର ନୃପ ରାଣି । ସପନ ଦେଖି ଉଠି ବସି ॥
ଦାଣ୍ଡ ପାଞ୍ଚବଖରି ମେଲା । ନୃପତି ତହିଁ ବିଜେ କଲା ॥
ଖୁଣ୍ଟିଆ ରାଇ ପରମାଣ । ବନ୍ଦୀ ସେବକ ଆଗେ ଆଣ ॥
× : ×
ରାଜା ଆଜ୍ଞା ଦେଲେ ଅନାଇଁ । ତୁମ୍ଭର କିଛି ଦୋଷ ନାହିଁ ॥
ସେ ମାୟା ଅନ୍ତ କେ କରିବ । କାହିଁ ବ୍ରହ୍ମରେ ଯାର ଭାବ ॥
ସମସ୍ତେ ଚିନ୍ତିବେ ଯାଅ ବେଗ । ପ୍ରଭୁ ସେବାରେ ଯାଇ ଲାଗ ॥

କବି ବାଲଗାଁ ଦାସ ଏହିପରି ଭାବରେ 'ଭକ୍ତମାଳିକା' ପୁସ୍ତକଟିକୁ ତେରଟି ଅଧ୍ୟାୟରେ ଶେଷ କରିଛନ୍ତି ।

ପ୍ରସ୍ତୁତ 'ଭକ୍ତମାଳିକା' ପୁସ୍ତକଟି ଖଣ୍ଡିଏ ମାତ୍ର ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଥିବାରୁ, ଏହାର ପାଠଭେଦ ଓ ପାଠରେ ଥିବା ରାଜା ଓ ଭକ୍ତମାନଙ୍କ ନାମର ଭ୍ରମ ପ୍ରମାଦ ସମ୍ବନ୍ଧରେ ବିଶେଷ ଆଲୋଚନା କରିବା ସମ୍ଭବ ନୁହେଁ । 'ଚଉଷଠୀଗୁପ୍ତ ଭକ୍ତମାଳିକା' ଶୀର୍ଷକ ଆଉ ଖଣ୍ଡିଏ ପାଞ୍ଚ ଅଧ୍ୟାୟବିଶିଷ୍ଟ ପୋଥି ନିମାପଡ଼ା ବିଦ୍ୟାଳୟର ଅଧ୍ୟାପକ

ଶ୍ରୀ କୃଷ୍ଣବଲ୍ଲଭ ମହାନ୍ତିଙ୍କଠାରେ ଥିବାର ଜଣାଯାଏ । ଖୁବ୍ ସମ୍ଭବତଃ ରାଜ୍ୟ ସଂଗ୍ରହାଳୟରେ ଥିବା 'ଭକ୍ତମାଳିକା' ପୋଥିର ଅବିକଳ ନକଲ; କେବଳ ନାମତଃ ଭିନ୍ନ । ସେଥିରେ ଚଉଷଠି ଭକ୍ତଙ୍କ ସମ୍ବନ୍ଧରେ ଲେଖାଥିବାରୁ କୌଣସି ନକଲ୍‌କାର ପୋଥିଟିର ନାମ 'ଚଉଷଠୀ ଗୁପ୍ତ ଭକ୍ତମାଳିକା' ବୋଲି ନାମକରଣ କରିଛନ୍ତି ।

ଏ ପ୍ରକାର ଉଦାହରଣ 'ବାଲିଗାଁ ଦାସିଆ ଭାଗବତ' ପୋଥିରୁ ମଧ୍ୟ ମିଳିଥାଏ । ଭିନ୍ନ ଭିନ୍ନ ଅଞ୍ଚଳରୁ ମିଳିଥିବା ସେହି ପୋଥିଟିର ନାମ 'ଆଗତ ଭବିଷ୍ୟ', 'ଆଗତ ଭବିଷ୍ୟ ମାଳିକା', 'ଭକ୍ତମାଳିକା' ଓ 'ବାଲିଗାଁ ଦାସିଆ ଭାଗବତ' ନାମରେ ଥିବାର ଦେଖାଯାଏ । ତେଣୁ ନମାପଡ଼ା ଅଞ୍ଚଳରେ ଥିବା ଅସମ୍ପୂର୍ଣ୍ଣ 'ଭକ୍ତମାଳିକା' ପୋଥିଟିର ନାମ 'ଚଉଷଠୀ ଗୁପ୍ତ ଭକ୍ତ ମାଳିକା' ହେବା ଆଦୌ ଅସମ୍ଭବ ନୁହେଁ । □□□

# ବାଲଗିଁ। ଦାସଙ୍କ ସମୟ

କବି ଦାସିଆ ବାଉରି ବା ବାଲଗିଁ। ଦାସ କେଉଁ ସମୟରେ ଜନ୍ମଗ୍ରହଣ କରି ଓଡ଼ିଆ ଭକ୍ତ ସମାଜ ତଥା କବିମଣ୍ଡଳୀରେ ସ୍ଥାନ ଅଧିକାର କରିଥିଲେ, ସେ ସମ୍ବନ୍ଧରେ ଅନେକ ଉପାଦାନ ଆମର ହସ୍ତଗତ ହୁଏ; କିନ୍ତୁ ସେହି ଉପାଦାନଗୁଡ଼ିକ ଏପରିଭାବରେ ପରସ୍ପର ବିରୋଧାତ୍ମକ ଉପାଦାନ ଯେ, ସେ ସମ୍ବନ୍ଧରେ କୌଣସି ଠିକ ଧାରଣା ଦେବା ସମ୍ଭବ ନୁହେଁ । ତେଣୁ ବାଲଗିଁ। ଦାସଙ୍କ ରଚନା 'ଆଗତଭବିଷ୍ୟ' ଓ 'ଭକ୍ତମାଳିକା' ପୁସ୍ତକରେ ତାଙ୍କ ସମୟସୂଚକ ଯେଉଁ ସବୁ ତଥ୍ୟମାନ ରହିଛି, ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯିବା ନିତାନ୍ତ ଅବଶ୍ୟକ ।

କୌଣସି ବ୍ୟକ୍ତି ବା କବିଙ୍କର ସମୟ ନିର୍ଦ୍ଧାରଣ ଲାଗି ଐତିହାସିକ ବିବରଣୀ, କିମ୍ବଦନ୍ତୀ, ସାମୟିକ ବା ପରବର୍ତ୍ତୀ ସାହିତ୍ୟ ଉପରେ ବିଶେଷ ଗୁରୁତ୍ୱ ଦିଆଯାଏ । ଯେଉଁଠାରେ ଐତିହାସିକ ବିବରଣୀ ପୂର୍ଣ୍ଣମାତ୍ରାରେ ବା ଆଂଶିକ ଭାବରେ ଥାଏ, ତାହାକୁ ମୌଳିକ ଭିତ୍ତିରୂପେ ଗ୍ରହଣ କରି ସମୟ ନିର୍ଦ୍ଧାରଣ କରାଯାଏ । ଯେଉଁଠି ଐତିହାସିକ ବିବରଣୀ ଧାର୍ମିକ କଳ୍ପନାରେ ଅସ୍ପଷ୍ଟ ହୁଏ, ସେଠାରେ ଆଲୋଚକମାନେ କିଂବଦନ୍ତୀ ଓ ସାମୟିକ ସାହିତ୍ୟରୁ ପ୍ରକୃତ ଐତିହାସିକ ତଥ୍ୟର ଅନୁସନ୍ଧାନ କରନ୍ତି । ଯେଉଁଠାରେ ଆଦୌ ଐତିହାସିକ ଉପାଦାନ ମିଳେନାହିଁ, ସେଠାରେ କିଂବଦନ୍ତୀ ଓ ସାହିତ୍ୟିକ ସ୍ୱୀକାରୋକ୍ତିରୁ ଗୋଟିଏ ଆନୁମାନିକ ସମୟ ବାହାର କରାଯାଏ ।

କବି ବାଲଗିଁ। ଦାସଙ୍କ କ୍ଷେତ୍ରରେ ଐତିହାସିକ ବିବରଣୀ, କିମ୍ବଦନ୍ତୀ, ସାହିତ୍ୟିକ ସ୍ୱୀକାରୋକ୍ତି ଥିବା ସତ୍ତ୍ୱେ, ତାଙ୍କ ସମୟ ନିର୍ଦ୍ଧାରଣ ନିର୍ଭୁଲ ଭାବରେ ହେବା ସମ୍ଭବ ନୁହେ ।

ବାଲଗିଁ। ଦାସ 'ଆଗତଭବିଷ୍ୟ' ପୁସ୍ତକର ଦ୍ୱିତୀୟ ଅଧ୍ୟାୟ (ପରିଶିଷ୍ଟରେ ପ୍ରଦତ୍ତ ହୋଇଛି)ରେ ଓଡ଼ିଶାର ରାଜବଂଶାବଳୀ ମଧ୍ୟରୁ କେତେଜଣ ରାଜାଙ୍କ ନାମ ଓ କାର୍ଯ୍ୟାବଳୀର ଉଲ୍ଲେଖ କରିଛନ୍ତି । ସେ ପ୍ରଥମେ ଜଗନ୍ନାଥ ଦେବ, ଅନନ୍ତ ଦେବ, ରାମଚନ୍ଦ୍ର ଦେବ—ଏହି ତିନିଜଣଙ୍କ ନାମ ଲେଖି ସେମାନେ ନିଜ ନିଜ ପିତାଙ୍କ ପରେ ରାଜସିଂହାସନ ଅଳଙ୍କୃତ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ସେଥି ମଧ୍ୟରୁ ଦ୍ୱିତୀୟ ରାଜା ଅନନ୍ତ ଦେବ ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ ହୋଇପାରନ୍ତି । ଅନ୍ୟ ଦୁଇଜଣ ରାଜା ବୋଧହୁଏ ଗଙ୍ଗବଂଶର ନୁହନ୍ତି । ଶୁଣାକଥା ଉପରେ ଆଧାରକରି କବି ଲେଖିଥିବାରୁ, ସେ ପ୍ରକାର ପ୍ରମାଦ

ହେବା ଅସମ୍ଭବ ନୁହେଁ; କିନ୍ତୁ ରାଜା ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ ବହୁଦିନ ଧରି ଗଙ୍ଗବଂଶର ରାଜସିଂହାସନ ଅଧିକାର କରିବା ସଙ୍ଗେ ସଙ୍ଗେ, ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପ୍ରଭୃତି ବହୁ ଜନହିତକର କାର୍ଯ୍ୟ କରିଥିଲେ । ତେଣୁ ଓଡ଼ିଶାର ଆବାଳ-ବୃଦ୍ଧବନିତା ତାଙ୍କ ନାମଟିକୁ ମନେରଖିଥିଲେ ।

ଏହି ତିନି ରାଜାଙ୍କ ପରେ କବି ଦାସିଆ ପ୍ରତାପରୁଦ୍ର ଦେବଙ୍କ ନାମ ଉଲ୍ଲେଖକରି କହିଛନ୍ତି—

ତଦନ୍ତେ ପ୍ରତାପ ଯେ ରୁଦ୍ର । ବିଷ୍ଣୁ ଭଗତ ସେ ନରେନ୍ଦ୍ର ॥
ଧର୍ମ ପାଳନ ତାର ନୀତି । ନିର୍ମଳ ଯାହାଙ୍କର ପ୍ରୀତି ॥
ଧରଣୀଧର ତାର ମନ୍ତ୍ରୀ । ସାଧୁ ବୈଷ୍ଣବେ ହୋଇ ପ୍ରୀତି ॥
ବିଷ୍ଣୁ ଭକତି ପରାୟଣ । ଶୁଣିମା ଶାସ୍ତ୍ର ଯେ ପୁରାଣ ॥
ଗୁରୁ ବୈଷ୍ଣବ ସ୍ନେହ କରି । ପୃଥ୍ୱୀ ଧର୍ମରେ ଥିବ ପାଳି ॥

ଗଙ୍ଗବଂଶରେ ବହୁ ପ୍ରତିଷ୍ଠିତ ରାଜା ରାଜତ୍ୱ କରିଥିଲେ ମଧ୍ୟ ଜଗନ୍ନାଥ ଓ ରାମଚନ୍ଦ୍ର ନାମରେ କେହି ରାଜା ନଥିଲେ କିମ୍ବା ରାମଚନ୍ଦ୍ର ଦେବଙ୍କ ପୁତ୍ର ପ୍ରତାପରୁଦ୍ର ଦେବ କିମ୍ବା ପ୍ରତାପଇନ୍ଦ୍ର ଦେବ ନଥିଲେ । ପ୍ରତାପରୁଦ୍ର ଦେବଙ୍କ ସମୟରେ ଶ୍ରୀ ଚୈତନ୍ୟଦେବ ଓଡ଼ିଶା ଆସିଥିଲେ ଏବଂ ତାଙ୍କ ସମୟରେ ପଞ୍ଚସଖା ଜଗନ୍ନାଥ, ବଳରାମ, ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତଙ୍କ ଧର୍ମପ୍ରଚାର ତଥା ଗ୍ରନ୍ଥରଚନା ଓଡ଼ିଶାବାସୀଙ୍କୁ ମୁଗ୍ଧ କରିଥିଲା । ତେଣୁ ପ୍ରତାପରୁଦ୍ର ଦେବ, ଶ୍ରୀଜଗନ୍ନାଥ ପ୍ରଭୃତି ପଞ୍ଚସଖା ଉତ୍କଳରେ ଘରେ ଘରେ ସୁପରିଚିତ ଥିଲେ । ତେଣୁ ତାଙ୍କ ନାମର ବୈଶିଷ୍ଟ୍ୟ ସହି କବି ଏଠାରେ ଉଲ୍ଲେଖ କରିଛନ୍ତି; କିନ୍ତୁ ପ୍ରକୃତରେ ବାଲିଗାଁ ଦାସ ତାଙ୍କ ସମସାମୟିକ ନୁହନ୍ତି । ସେ ଯଦି ତାଙ୍କ ସମସାମୟିକ ହୋଇଥାଆନ୍ତେ; ତା'ହେଲେ ପ୍ରତାପରୁଦ୍ରଙ୍କ ପିତା ଓ ତାଙ୍କ ମନ୍ତ୍ରୀଙ୍କ ନାମରେ ଭୁଲ୍ କରିନଥାନ୍ତେ !

ଏଠାରେ ଆଉ ଦୁଇଟି ସନ୍ଦେହ ମନରେ ଉଙ୍କିମାରେ । ପ୍ରଥମତଃ 'ଭକ୍ତମାଳିକା' ପୋଥିର ପ୍ରଥମ ଅଧ୍ୟାୟରୁ ଜଣାଯାଏ ଯେ, ପ୍ରତାପରୁଦ୍ର ଦେବଙ୍କ ସମକାଳୀନ ପଞ୍ଚସଖା (ଜଗନ୍ନାଥ, ବଳରାମ, ଅଚ୍ୟୁତ, ଯଶୋବନ୍ତ ଅନନ୍ତ) ଭକ୍ତର ପରୀକ୍ଷାଲାଗି ଦାସିଆ ମଠ ବାଲିଗାଁଠାରେ ଉପସ୍ଥିତ ହୋଇଥିଲେ ଏବଂ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଦାସିଆଙ୍କୁ ଦୀକ୍ଷା ଦେଇଥିଲେ । କେବଳ ସେତିକି ନୁହେଁ, ବାଲିଗାଁ ଦାସ ବଳରାମ ଦାସଙ୍କୁ ପୋଖରୀ ମଧ୍ୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦଶାବତାର ଦେଖାଇଥିଲେ ।

ଦ୍ୱିତୀୟତଃ ଶ୍ରୀ ଜଗନ୍ନାଥ ମହାପ୍ରଭୁ ବ୍ରାହ୍ମଣରୂପରେ ଆସି ବାଲିଗାଁ ଦାସଙ୍କ ମଠରେ ଉପସ୍ଥିତ ହୋଇଥିବା ସମୟରେ ରାଜାଙ୍କ ଖଟଣି ଭୋଗ ନଷ୍ଟ ହୋଇଥିଲା । ତେଣୁ ପ୍ରତାପରୁଦ୍ରଦେବ ପଣ୍ଡା ପଡ଼ିଆରୀମାନଙ୍କୁ ଦଣ୍ଡ ଦେଇଥିଲେ । ସେହିଦିନ ରାତିରେ ଶ୍ରୀ ଜଗନ୍ନାଥ ସ୍ୱପ୍ନରେ ରାଜା ପ୍ରତାପରୁଦ୍ରଙ୍କୁ ଜଣାଇଦେଲେ ଯେ, ସେ ବାଲିଗାଁ ଦାସଙ୍କ

ମଠରେ ଥିବାରୁ ଭୋଗବେଳେ ରତ୍ନସିଂହାସନରେ ଉପସ୍ଥିତ ନଥିଲେ । ଏଥିରୁ ସ୍ପଷ୍ଟ ହୋଇଯାଏ ଯେ ବାଲଗାଁ ଦାସ ଗଜପତି ରାଜା ପରମ ବୈଷ୍ଣବ ପ୍ରତାପରୁଦ୍ର ଦେବଙ୍କ ସମୟରେ ବିଦ୍ୟମାନ ଥିଲେ ।

ଯଦି ସେ ପଞ୍ଚସଖାଙ୍କଦ୍ୱାରା ପରୀକ୍ଷିତ ଏବଂ ଶ୍ରୀ ଜଗନ୍ନାଥ ଦାସଙ୍କ ଦ୍ୱାରା ଦୀକ୍ଷିତ ହୋଇଥିଲେ, ତେବେ ପ୍ରତାପରୁଦ୍ରଙ୍କ ପରି ଉଦାରମନା ବୈଷ୍ଣବ ପରିପୋଷକ ପ୍ରତାପରୁଦ୍ରଙ୍କ ପିତାଙ୍କ ନାମରେ ଏପରି ଭ୍ରମ କଲେ କାହିଁକି ?

ଏଠାରେ କବି ବାଲଗାଁ ଦାସଙ୍କର ଭକ୍ତିକ କଳ୍ପନାକୁ ଆଶ୍ରୟ କରାଗଲେ ଉଭୟ ଅସ୍ୱାଭାବିକତାର ସମାଧାନ ହୋଇଯାଏ ।

ଏ' ପ୍ରକାର ଭକ୍ତିକ କଳ୍ପନାକୁ ସମର୍ଥନ କରିବାପାଇଁ ସେହି 'ଆଗତ ଭବିଷ୍ୟ' ରାଜବଂଶାବଳୀରେ ଆଉ ଗୋଟିଏ ତଥ୍ୟ ମିଳେ । ସେ ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି ଯେ ପ୍ରତାପରୁଦ୍ରଙ୍କ ଜ୍ୟେଷ୍ଠପୁତ୍ରର ନାମ ଥିଲା—ଲାଙ୍ଗୁଳା ନରସିଂହ ଦେବ । ଏଥିରୁ ତାଙ୍କ ପ୍ରଦତ୍ତ ରାଜବଂଶାବଳୀଟି ଯେ ସମ୍ପୂର୍ଣ୍ଣ ଶୁଣାକଥା ଉପରେ ପର୍ଯ୍ୟବସିତ, ଏଥିରେ ତିଳେ ମାତ୍ର ସନ୍ଦେହ ରହେନାହିଁ ।

ଗଙ୍ଗବଂଶର ପ୍ରଖ୍ୟାତ ରାଜା ଲାଙ୍ଗୁଳା ନରସିଂହ ଦେବ ଅନଙ୍ଗଙ୍କ ଭୀମଦେବଙ୍କ ପୁତ୍ର, ଅନନ୍ତ ବାସୁଦେବ ମନ୍ଦିରର ପ୍ରତିଷ୍ଠାତ୍ରୀ ଚନ୍ଦ୍ରିକା ଦେବୀଙ୍କ ଭ୍ରାତା ଓ ପ୍ରସିଦ୍ଧ କୋଣାର୍କ ସୂର୍ଯ୍ୟ ମନ୍ଦିରର ନିର୍ମାତା ଥିଲେ । ସେ ମଧ୍ୟ ବାରଶହ ଶିଳ୍ପୀଙ୍କୁ ଲଗାଇ ଷୋଳବର୍ଷରେ ପୃଥିବୀବିଖ୍ୟାତ ମନ୍ଦିର ନିର୍ମାଣ କରାଇଥିଲେ, ତେଣୁ ସେ ଓଡ଼ିଶାବାସୀଙ୍କ ସମକ୍ଷରେ ସୁପରିଚିତ ଥିଲେ । ଏଭଳି ଜଣେ ପ୍ରଖ୍ୟାତଯଶା ରାଜାଙ୍କୁ ବାଲଗାଁ ଦାସ ବାଦ୍ ନଦେଇ, ତାଙ୍କ ସମ୍ବନ୍ଧରେ ଯାହା ଲୋକମୁଖରୁ ଶୁଣିଥିଲେ, ତାହା ଉଲ୍ଲେଖ କଲେ; କିନ୍ତୁ ଏହି ବିବରଣୀଟି ଅନ୍ୟାନ୍ୟ କେତୋଟି ଭ୍ରାନ୍ତଧାରା ସହିତ ମିଶି ଗୋଟିଏ ବିଶାଳ ପ୍ରବାହ ସୃଷ୍ଟି-କରିଥିଲା ।

ଲାଙ୍ଗୁଳା ନରସିଂହଙ୍କ ପରେ ଭକ୍ତକବି ବାଲଗାଁ ଦାସଙ୍କ ତାଲିକାରେ ଗୋବିନ୍ଦ ଦେବଙ୍କ ନାମ ଥିବାର ଦେଖାଯାଏ । ଖୁବ ସମ୍ଭବତଃ ଏ' ଗୋବିନ୍ଦ ଦେବ ପ୍ରତାପରୁଦ୍ରଦେବଙ୍କ ଉତ୍ତରାଞ୍ଚଳର ଶାସକ ଗୋବିନ୍ଦ ବିଦ୍ୟାଧର ହୋଇପାରନ୍ତି । ତାଙ୍କ ପୁତ୍ର 'କାଳିଆ' ଥିଲେ ଏବଂ ସେହିଠାରେ ଗଙ୍ଗବଂଶର ରାଜତ୍ୱ ଶେଷହେଲା । ଏ' କାଳିଆ ହୁଏତ ପ୍ରତାପରୁଦ୍ରଙ୍କ ପୁତ୍ର 'କାଳୁଆଦେବ' ହୋଇପାରନ୍ତି । ଏ' ପ୍ରକାର ବିବରଣୀରୁ ସ୍ପଷ୍ଟ ଧାରଣା କରିହୁଏ ଯେ, ଭକ୍ତକବିଙ୍କର ଗଙ୍ଗବଂଶ ସମ୍ବନ୍ଧରେ ଆଦୌ ଧାରଣା ନଥିଲା କିମ୍ବା ସେ ପ୍ରତାପରୁଦ୍ରଦେବଙ୍କ ସମକାଳୀନ ଆଦୌ ନଥିଲେ । ଶ୍ରୀ ଜଗନ୍ନାଥଙ୍କ ଶିଷ୍ୟ ଓ ପଞ୍ଚସଖାଙ୍କ ସହିତ ତାଙ୍କର ଆଲୋଚନା ସମ୍ପୂର୍ଣ୍ଣ କପୋଳକଳ୍ପିତ ଘଟଣା । କେବଳ ସେମାନଙ୍କ ସୁକୀର୍ତ୍ତିର ବର୍ଣ୍ଣନା ଲାଗି, ସେ ଯେପରି ଶୁଣିଥିଲେ, ତଦନୁଯାୟୀ 'ଆଗତ ଭବିଷ୍ୟ' ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ଐତିହାସିକ ବିବରଣୀ ସମ୍ବନ୍ଧରେ ତାଙ୍କର ପୂର୍ଣ୍ଣଧାରଣା ନଥିବାରୁ ଗଙ୍ଗବଂଶ ଓ

ସୂର୍ଯ୍ୟବଂଶର ରାଜାମାନଙ୍କ ସମ୍ବନ୍ଧରେ କେତେକ ମନଗଢ଼ା ଘଟଣା ଲେଖି ଉଭୟ ବଂଶର ରାଜାମାନଙ୍କୁ ଗଙ୍ଗବଂଶର ବୋଲି ଉଲ୍ଲେଖ କରିଛନ୍ତି ।

ତପୂରେ ସେ ମୁକୁନ୍ଦଦେବଙ୍କ ନାମ ଉଲ୍ଲେଖ କରିଛନ୍ତି । ସେହି ସମୟରେ ବଙ୍ଗ ସୁଲତାନଙ୍କ ସେନାପତି 'କଳାପାହାଡ଼' ଆଖ୍ୟାଧାରୀ ଯବନ ସେନାପତିଙ୍କ ଓଡ଼ିଶା ଆକ୍ରମଣ ଓଡ଼ିଶା ଇତିହାସରେ ଏକ ସ୍ମରଣୀୟ ଘଟଣା । ଅଦ୍ୟାପି ଏହି ସ୍ମୃତି ଜନମାନସରେ ଅତୁଟ ରହିଛି—

"ଅଇଲା କଳାପାହାଡ଼, ଭାଙ୍ଗିଲା ଲୁହାର ବାଡ଼,
ପିଇଲା ମହାନଦୀ ପାଣି,
ସୁବର୍ଣ୍ଣ ଥାଳିରେ ଝାଟି ପରଷିଲେ,
ମୁକୁନ୍ଦ ଦେବଙ୍କ ରାଣୀ ।"

ମୁକୁନ୍ଦ ଦେବ ମୁକୁନ୍ଦ ହରିଚନ୍ଦନ ନାମରେ ପ୍ରଖ୍ୟାତ ଥିଲେ । ସେ ପରବର୍ତ୍ତୀ ରାଜା ରାମଚନ୍ଦ୍ର ଦେବ (୧ମ)ଙ୍କ ପିତା ଦନେଇ ବିଦ୍ୟାଧର ବା ଜନାର୍ଦ୍ଦନ ବିଦ୍ୟାଧରଙ୍କର ପ୍ରଧାନ ଶତ୍ରୁ ଥିଲେ । ସେ ଗୌଡ଼ ବିଜୟରେ ଯାଇ ଗଙ୍ଗାକୂଳରେ ଅବସ୍ଥାନ କରିଥିବା ସମୟରେ ଯବନ ସେନାପତି ଗୁପ୍ତ ମାର୍ଗ ଦେଇ ଅତର୍କିତ ଭାବରେ ଓଡ଼ିଶା ଆକ୍ରମଣ କରିଥିଲେ । ଯାଜପୁର ଉପକଣ୍ଠରେ ଥିବା 'ଗୋହିରା ଟିକିରି'ଠାରେ କଳାପାହାଡ଼ ଓ ମୁକୁନ୍ଦ ହରିଚନ୍ଦନଙ୍କ ମଧ୍ୟରେ ଘୋର ଯୁଦ୍ଧ ସଂଘଟିତ ହୋଇଥିଲା । ଏହି ଯୁଦ୍ଧରେ ମୁକୁନ୍ଦ-ଦେବଙ୍କର ମୃତ୍ୟୁ ହୁଅନ୍ତେ, କଳାପାହାଡ଼ ଶ୍ରୀମନ୍ଦିର ଲୁଣ୍ଠନ ତଥା ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଅପବିତ୍ର କରିଥିଲେ । ଏହି ଘଟଣା ଓଡ଼ିଶାର ଘରେ ଘରେ ରଟିଯାଇଥିଲା । ଏହି ଘଟଣାଟିକୁ ଲୋକମୁଖରୁ ଶୁଣି ବାଲ୍ୟଗାଁ ଦାସ 'ଆଗତ ଭବିଷ୍ୟ' ପୁସ୍ତକରେ ଲେଖିଛନ୍ତି—

"ହାଲୋକ ନାମେ ହରିଚନ୍ଦ୍ର । ରାଜନ ତେଲଙ୍ଗା ମୁକୁନ୍ଦ ॥
ଗଙ୍ଗାକୂଳକୁ ଯିବେ ମାରି । ଗଉଡ଼େଶ୍ୱର ଯେ ବଇରି ॥
ସୈନ୍ୟ ତାହାର ଘେନ ସଙ୍ଗ । ବୋଲିବ ଓଡ଼ିଶାକୁ ଭଙ୍ଗ ॥
କଳାପାହାଡ଼ ରଣ ରଙ୍ଗେ । ଗୁପତେ ଆସି ସେ ଯାରଙ୍ଗେ ॥
ବଳ ଆସିବ ତାର ଘୋଟି । ପକାଇ କଳିବଟ କାଟି ॥
କ୍ଷେତ୍ରରେ କରିବ ଅନୀତି । ଦେବତା ଅପୂଜା ହୁଅନ୍ତି ॥"

ତପୂରେ ବାଲ୍ୟଗାଁ ଦାସ ଭୋଇବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ରଙ୍କ ରାଜତ୍ୱ ଓ ବାଦଶାହା ଆକବରଙ୍କ ହିନ୍ଦୁ ସେନାପତି ରାଜା ମାନସିଂହଙ୍କ ଓଡ଼ିଶା ଆଗମନ ବିଷୟରେ ଲେଖିଛନ୍ତି । ରାମଚନ୍ଦ୍ର ଦେବଙ୍କ ସମ୍ପର୍କରେ ଲେଖିବାକୁ ଯାଇ, କପରି ମାନସିଂହଙ୍କଦ୍ୱାରା ମନୋନୀତ ହୋଇ ଷୋଳଶାସନର ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଧର୍ମନୀତିରେ ଶାସନ ପରିଚାଳନା କରିଥିଲେ, ତାର ସୂଚନା ଦେଇଛନ୍ତି ।

ଐତିହାସିକ ପ୍ରମାଣରୁ ଜଣାଯାଏ ଯେ, ଗଜପତି ରାମଚନ୍ଦ୍ର ଦେବ ଖ୍ରୀ: ଅ: ୧୫୬୮ରୁ ମୁକୁନ୍ଦ ହରିଚନ୍ଦନଙ୍କ ମୃତ୍ୟୁ ପରେ ଖୋରଧା ରାଜସିଂହାସନ ଅଧିକାର କରିବା ପୂର୍ବରୁ ନାନା ଅସୁବିଧାର ସମ୍ମୁଖୀନ ହୋଇଥିଲେ । ବାଦ୍‌ସାହ୍ ଆକବରଙ୍କ ସେନାପତି ରାଜା ମାନସିଂହ ପୁରୀ ଆସି, ରାଜା ରାମଚନ୍ଦ୍ର ଦେବଙ୍କ ସିଂହାସନ ପ୍ରାପ୍ତିକୁ ସ୍ୱୀକାର କରିଥିଲେ । ଗଜପତି ପଦବୀ ଧାରଣ କରି ରାଜା ରାମଚନ୍ଦ୍ର ଓଡ଼ିଶାର ରାଜାରୂପେ ପ୍ରସିଦ୍ଧି ଅର୍ଜନ କରିଥିଲେ । ସେ ଶ୍ରୀ ଜଗନ୍ନାଥଙ୍କ ଦାରୁବିଗ୍ରହଗୁଡ଼ିକର ନବକଳେବର କରାଇଥିବାରୁ 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ଉପାଧିରେ ଭୂଷିତ ହୋଇ 'ଷୋଳଶାସନ'ପ୍ରଭୃତି ବହୁ ଲୋକହିତକର କାର୍ଯ୍ୟ କରିଥିଲେ । ସେ ଶ୍ରୀ ଜଗନ୍ନାଥଙ୍କ ଶ୍ରୀମନ୍ଦିରର ସୁରକ୍ଷା ଲାଗି ବହୁବିଧ ଯତ୍ନ କରିଥିଲେ ।

ଭକ୍ତ ବାଲ୍‌ଗାଁ ଦାସ ଯଦି ତାଙ୍କ ସମୟରେ ବିଦ୍ୟମାନ ଥାଆନ୍ତେ, ତେବେ ତାଙ୍କ ଲେଖୋଦ୍ଧର କୀର୍ତ୍ତିକଳାପର ଆଲୋଚନା କରିବାରୁ କେବେହେଲେ କ୍ଷାନ୍ତ ହୋଇନଥାନ୍ତେ । କେବଳ ତାଙ୍କ ସମ୍ବନ୍ଧରେ ସେ ଯେତିକମାତ୍ର ଶୁଣିଥିଲେ, ତାହାହିଁ ବର୍ଣ୍ଣନା କରିଛନ୍ତି । ତେଣୁ ବାଲ୍‌ଗାଁ ଦାସଙ୍କୁ ଗଜପତି ରାମଚନ୍ଦ୍ର ଦେବଙ୍କ ସମସାମୟିକ ବୋଲି କହିବାର କୌଣସି ଐତିହାସିକ ପ୍ରମାଣ ଆମର ହସ୍ତଗତ ହେଉନାହିଁ । କବି ଦାସିଆ କେବଳ କୁଜଙ୍ଗରୁ ଦାରୁବ୍ରହ୍ମ ଆଣିବା ଓ ମାନସିଂହଙ୍କ ଦ୍ୱାରା ସ୍ୱୀକୃତ ହେବା ଘଟଣା ଦୁଇଟି ଲୋକମୁଖରୁ ଶୁଣି 'ଆଗତଭବିଷ୍ୟ' ପୋଥିରେ ଉଲ୍ଲେଖ କରିଛନ୍ତି—

"କ୍ଷେତ୍ରରେ ରାମଚନ୍ଦ୍ର ଥିବ । ତାହାକୁ ଯବନ ଦେଖିବ ॥
ଶ୍ରୀନୀଳକନ୍ଦେ ପଶିକରି । ରହିବେ ସୈନ୍ୟବଳ ପୂରି ॥
ମାନ ଯେ ସିଂହ ବାତୃରିବ । ରାମକୁ ଟୀକା ଦେଇଯିବ ॥

× × ×

ଆମ୍ଭେ ଯେ ଆଜ୍ଞା ଦେବୁ ପୁଣ । କୁଜଙ୍ଗେ ହୋଇବୁ ଗୋପ୍ୟାନ ॥
ମୋତେ ଆଣିଲେ ମୋର ଭକ୍ତ । ଶ୍ରୀନୀଳକନ୍ଦେ ହେବୁ ସ୍ଥିତ ॥"

ଏ ଦୁଇଟି ବିଶିଷ୍ଟ ରାଜନୈତିକ ଘଟଣା ସେତେବେଳେ ଲୋକମୁଖରେ ପ୍ରସ୍ଫୁରିତ ହେବା ସଙ୍ଗେ ସଙ୍ଗେ ଶ୍ରୀମନ୍ଦିର ଘଟଣାବଳୀ ସମ୍ବଳିତ 'ମାଦଳା ପାଞ୍ଜି'ରେ ଲିପିବଦ୍ଧ ହୋଇଛି ଏବଂ ବହୁଦିନ ପର୍ଯ୍ୟନ୍ତ ଏହା ଲୋକସ୍ମୃତିରେ ଏକ ଅବିସ୍ମରଣୀୟ ଘଟଣା ହୋଇ ରହିଥିଲା । ତଦ୍‌ବ୍ୟତୀତ ଗଜପତି କପିଳେନ୍ଦ୍ରଦେବଙ୍କ ଦ୍ୱାରା ପ୍ରତିଷ୍ଠିତ 'ଷୋଳଶାସନ' ଆକ୍ରମଣକାରୀଙ୍କ ଦ୍ୱାରା ଧ୍ୱସ୍ତ ହୋଇଯାଆନ୍ତେ; ରାମଚନ୍ଦ୍ର ଦେବ ପୁରୀ ଜିଲ୍ଲାରେ 'ଷୋଳ ଶାସନ' ବସାଇଥିଲେ । ଏହା ଏକ ଉଲ୍ଲେଖଯୋଗ୍ୟ ଘଟଣା ହୋଇଥିବାରୁ, ସେହି ଅଞ୍ଚଳର ପ୍ରତ୍ୟେକ ଲୋକ ଏ' ଘଟଣା ଉପରେ ଗୁରୁତ୍ୱାରୋପ କରୁଥିଲେ । ତେଣୁ ସେହି ଘଟଣାକୁ ବାଲ୍‌ଗାଁ-ଦାସ ତାଙ୍କ ପୁସ୍ତକରେ ଲିପିବଦ୍ଧ କରିବା ଆଦୌ ଅସ୍ୱାଭାବିକ ନୁହେଁ !

"ବସାଇ ଷୋଳ ଯେ ଶାସନ । ପରଜା ପାଳିବେ ରାଜନ ॥"

ପୂର୍ବୋକ୍ତ ଉକ୍ତୋଟି ରାଜନୈତିକ ଓ ସାଂସ୍କୃତିକ ଘଟଣାବଳୀର ଉଲ୍ଲେଖ 'ଆଗତ ଭବିଷ୍ୟ'ରେ କରାଯାଇ ଥିବାରୁ କବି ଦାସିଆ ତାଙ୍କ ସମସାମୟିକ ବୋଲି ଯୁକ୍ତିକରିବାର କାରଣ ନାହିଁ । କାରଣ କବି ପରବର୍ତ୍ତୀ ଭୋଇ ବଂଶୀୟ ରାଜାମାନଙ୍କ ବିଷୟରେ ଆହୁରି ବିସ୍ତୃତ ଭାବରେ ଉଲ୍ଲେଖ କରିଛନ୍ତି ।

ଭକ୍ତକବି ଦାସିଆ 'ଆଗତ ଭବିଷ୍ୟ' ଲେଖିବା ଛଳରେ ରାମଚନ୍ଦ୍ର ଦେବ (୧ମ)ଙ୍କ ପରବର୍ତ୍ତୀ ରାଜା ପୁରୁଷୋତ୍ତମ ଦେବଙ୍କ ସମ୍ବନ୍ଧରେ ଦୁଇଟି ପଦ ଲେଖିଛନ୍ତି । କିନ୍ତୁ ନରସିଂହ ଦେବ (ଖ୍ରୀ: ଅ: ୧୬୨୧-୧୬୪୬) ଙ୍କ ଠାରୁ ଗଜପତି ରାମଚନ୍ଦ୍ର ଦେବ (୨ୟ)ଙ୍କ ପର୍ଯ୍ୟନ୍ତ ଘଟଣାବଳୀର ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି । ନରସିଂହ ଦେବଙ୍କୁ ମୋଗଲ ସେନାପତି ଫତେଖାଁ ମୁଣ୍ଡକାଟି ହତ୍ୟା କରିଥିଲେ । ଏ ଘଟଣା ତଥା ତାଙ୍କ ପରେ ଗଙ୍ଗାଧର ଦେବ ଓ ବଳଭଦ୍ର ଦେବଙ୍କ ମଧ୍ୟରେ ବିବାଦ ଓ ଅଳ୍ପଦିନଲାଗି ଗଙ୍ଗାଧର ଦେବଙ୍କଦ୍ୱାରା ଖୋର୍ଦ୍ଧା ସିଂହାସନ ଅଧିକାର ସମ୍ବନ୍ଧରେ ବାଲଗାଁ ଦାସ ସୂଚନା ଦେଇଛନ୍ତି । ତତ୍ପରେ ସେ ବଳଭଦ୍ର ଦେବ, ମୁକୁନ୍ଦ ଦେବ, ଦିବ୍ୟସିଂହ ଦେବ, ହରେକୃଷ୍ଣ ଦେବ ଓ ଗୋପୀନାଥ ଦେବ (ଖ୍ରୀ: ୧୬୪୭-୧୭୨୬)ଙ୍କ ସମ୍ବନ୍ଧରେ ସଂକ୍ଷେପରେ ଉଲ୍ଲେଖକରି, ଗଜପତି ରାମଚନ୍ଦ୍ର ଦେବ ୨ୟ(ଖ୍ରୀ: ଅ: ୧୭୨୭-୩୬) ସମୟରେ ଶ୍ରୀ ମନ୍ଦିର ଉପରେ ବୈଦେଶିକ ଆକ୍ରମଣ, ମହାପ୍ରଭୁଙ୍କୁ ନେଇ ଦକ୍ଷିଣରେ ଅବସ୍ଥାନ କରାଇବା ଘଟଣା ଅତି ବିସ୍ତୃତ ଭାବରେ 'ଆଗତ ଭବିଷ୍ୟ'ରେ ଲିପିବଦ୍ଧ କରିଛନ୍ତି । କେବଳ ସେତିକି ନୁହେଁ, ବିଧର୍ମୀ ରାମଚନ୍ଦ୍ର ଦେବ (୨ୟ)ଙ୍କ ବିରୁଦ୍ଧରେ ତାଙ୍କ ଜେନାମଣି ଭାଗୀରଥି କୁମାରଙ୍କ ବିଦ୍ରୋହ ଓ ପରିଶେଷରେ ବୀରକେଶରୀ ଦେବଙ୍କ ରାଜ୍ୟାରୋହଣ ପୂର୍ବ ସମସ୍ତ ଘଟଣା ବର୍ଣ୍ଣନା କରିଛନ୍ତି । କିମ୍ବଦନ୍ତୀ ପ୍ରସିଦ୍ଧ ରାଜଗୁରୁ ପରମଲକ୍ଷ୍ମୀ ମହାପାତ୍ର କିଛିଦିନ ଖୋର୍ଦ୍ଧା ସିଂହାସନରେ ବସିଥିବା ଘଟଣାଟିକୁ ମଧ୍ୟ ବାଲଗାଁ ଦାସ ନିଜେ ପ୍ରତ୍ୟକ୍ଷ କଲପରି ଉଲ୍ଲେଖ କରିଛନ୍ତି—

"ଏକଇ ଦ୍ୱିଜ ସେ ବ୍ରାହ୍ମଣ । ରାଜା ହୋଇବ ତେରଦିନ ॥
ପରମାନନ୍ଦ (ମିଶ୍ର) ନାମ ତାର । ରାଜା ହୋଇବ ଦିନ ତେର ॥"

କେବଳ ସେତିକି ନୁହେଁ, ସେ ରାମଚନ୍ଦ୍ର ଦେବ (୨ୟ)ଙ୍କ ସମ୍ବନ୍ଧରେ ପ୍ରାୟ ପଚିଶ ପଦ ରଚନା କରି, ତତ୍କାଳୀନ ଓଡ଼ିଶାର ରାଜନୈତିକ ଅସ୍ଥିରତାର ସମ୍ୟକ୍ ସୂଚନା ଦେଇଛନ୍ତି । ତତ୍ପରେ ସେ ରାମଚନ୍ଦ୍ରଙ୍କ ପୁଅ ବୀରକେଶରୀ ଦେବଙ୍କ ସମ୍ବନ୍ଧରେ କେବଳ ଦୁଇଟିପଦ ରଚନା କରି ଓଡ଼ିଶା ଭୋଇବଂଶର ବଂଶାବଳୀ ଶେଷ କରିଛନ୍ତି । ସେହି ପ୍ରସଙ୍ଗରେ ସେ ମରହଟ୍ଟାମାନଙ୍କ ଆଗମନର ସୂଚନା ସ୍ୱରଚିତ 'ଭକ୍ତିମାଳିକା' ପୁସ୍ତକରେ ପ୍ରଦାନ କରିଛନ୍ତି ।

"ବୀର କେଶରୀ ଦେବ ଜାଣ । ବିପ୍ରାଳିକରେ ହୋଇ ଜନ୍ମ ॥
ସେହି ରାଜାଠାରୁ ଗୋଳକୁଣ୍ଡା । ବହୁତ ଜନ ହେବେ ଗୁଣ୍ଡା ॥
ଗୋଳ ଲାଗିବ ଘରେ ଘରେ । ନୃପତି ପଳାଇବ ଡରେ ॥
କଳିଙ୍ଗ ଦେଶ ମରହଟ୍ଟ । ଓଡ଼ିଶା ଭାଜିବ ସେ ନଷ୍ଟ ॥"

ତେଣୁ ନିଶ୍ଚିତ ଭାବରେ ଧାରଣା କରିହୁଏ ଯେ ଅନ୍ତତଃ ବୀରକେଶରୀ ଦେବ (୧ମ)ଙ୍କ ରାଜତ୍ୱର ବର୍ଷେ ଦି’ବର୍ଷ ପର୍ଯ୍ୟନ୍ତ ସେ ନିଶ୍ଚୟ ଜୀବିତ ଥିବେ । ତାଙ୍କୁ ଯଦି ଶତାୟୁ କିମ୍ବା ଏକଶତ କୋଡ଼ିଏ ବର୍ଷ ପରମାୟୁସମ୍ପନ୍ନ ବ୍ୟକ୍ତି ରୂପେ ଗ୍ରହଣ କରାଯାଏ, ତା’ ହେଲେ ତାଙ୍କର ଜନ୍ମ ଖ୍ରୀ: ଅ: ୧୬୨୦ରୁ ୧୬୩୦ ମଧ୍ୟରେ ହୋଇଥିବାର ଧାରଣା କରାଯାଇପାରେ । କିନ୍ତୁ ସେ ପ୍ରତାପରୁଦ୍ର ଦେବଙ୍କ ସମକାଳୀ ଓ ଦିବ୍ୟଦୃଷ୍ଟି ବଳରେ ଭୋଇ ବଂଶର ବୀରକେଶରୀ ଦେବ (୧ମ)ଙ୍କ ପର୍ଯ୍ୟନ୍ତ ଘଟଣାବଳୀ ‘ଆଗତ ଭବିଷ୍ୟ’ ପୁସ୍ତକରେ ଲିପିବଦ୍ଧ କରିଛନ୍ତି ବୋଲି କଳ୍ପନା କରିବା ଇତିହାସ ଦୃଷ୍ଟିରୁ ସମୀଚୀନ ହେବନାହିଁ । ଆଉ ମଧ୍ୟ ଦୁଇଶହ ବର୍ଷରୁ ସେ ଅଧିକଦିନ ଜୀବିତ ଥିଲେ ବୋଲି କଳ୍ପନା କରିବା ମଧ୍ୟ ବାସ୍ତବ ଦୃଷ୍ଟିକୋଣରୁ ସମୀଚୀନ ହେବନାହିଁ ।

ଅଧିକନ୍ତୁ ମଧ୍ୟ ଜଣାଯାଏ ଯେ, ବାଲିଗାଁ ଦାସଙ୍କ ଲିଖିତ ‘ଭକ୍ତମାଳିକା’ ପୋଥିର ପଞ୍ଚମ-ଷଷ୍ଠ ଅଧ୍ୟାୟରେ କେତେଜଣ ଭକ୍ତଙ୍କ ନାମତାଲିକା ରହିଛି । ସେହି ତାଲିକାରେ ‘ଜଗନ୍ନାଥ ଚରିତାମୃତ’ର ପ୍ରଣେତା ଦିବାକର ଦାସ’, ରସକଲ୍ଲୋଳ ଆଦି ଗ୍ରନ୍ଥର ପ୍ରଣେତା ଦୀନକୃଷ୍ଣ ଦାସ, ବିଷ୍ଣୁପୁରୀକୃତ ଭକ୍ତିରସାମୃତ ସିନ୍ଧୁର ଅନୁବାଦକ ରାମଦାସ (ବୃନ୍ଦାବତୀ ଦାସୀଙ୍କ ପୁତ୍ର), ସିଦ୍ଧ ବାରଙ୍ଗ ଦାସ, ଭାଗବତ ଦ୍ୱାଦଶ ସ୍କନ୍ଧର ଅନୁବାଦକ ତଥା କାର୍ତ୍ତିକ ମାହାତ୍ମ୍ୟ, ବିଷ୍ଣୁକେଶରୀ ପୁରାଣ ଆଦିର ପ୍ରଣେତା ମହାଦେବ ଦାସ, ପ୍ରସିଦ୍ଧ ଭକ୍ତକବି ସଦାନନ୍ଦ କବି-ସୂର୍ଯ୍ୟ ବ୍ରହ୍ମା ଆଦି ଭକ୍ତମାନଙ୍କ ନାମ ରହିଛି । ଉଲ୍ଲିଖିତ ଭକ୍ତକବିମାନେ ସପ୍ତଦଶ ଶତାବ୍ଦୀରେ ଜନ୍ମ ଗ୍ରହଣ କରି ନିଜ ନିଜର ଭକ୍ତିଭାବାତ୍ମକ ରଚନାଦ୍ୱାରା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭକ୍ତସମାଜରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ତେଣୁ ଭକ୍ତ ବାଲିଗାଁ ଦାସ ସେହି ଭକ୍ତକବିମାନଙ୍କ ସମକାଳୀନ ହେବା ଆଦୌ ଅସ୍ୱାଭାବିକ ନୁହେଁ ।

‘‘ରାମଚନ୍ଦ୍ର ଦିବାକର ମାଧବ ଯେ ଉଦ୍ଧବ ସାଧକ ଯେତେ ।

× × ×

ସ୍ୱେକାକ୍ଷର ମନ୍ତ୍ର ହୃଦରେ ଜପିଣ ପୁରୀରେ ଜନ୍ମ ହୋଇବ ।
ଦୀନକୃଷ୍ଣ ସେହୁ ଜନମ ହୋଇଛୁ ଗ୍ରନ୍ଥ କରିବ ଲେଖନ ।

× × ×

ମହାଦେବ ଦାସ ସ୍ଥାପନା ହୋଇଣ ଲିଙ୍ଗ ଗୋଟିଏ ହୋଇଛୁ ।

× × ×

ଭାଗବତ ଟୀକା ଅଠବଡ଼ ଅଂଶ ପୂର୍ବ ବାସନାସ୍ତେ ଜାତ ।

× × ×

ସିଦ୍ଧବାରଙ୍ଗ ଯେ ଶିଶୁ ସାରଙ୍ଗ ହେଙ୍ଗୁଲା ଶିଶୁ ଅନନ୍ତ ।

× × ×

ସଦାନନ୍ଦ ଆଦ ମୁକୁନ୍ଦ ଆନନ୍ଦ ଜଗବନ୍ଧୁ ମନ୍ତ୍ରପୁରେ ।

× × ×

ଭୀମ ବହ୍ମ ଦ୍ୱିଜ ଅନନ୍ତ ଶ୍ରୀକର ଜଗୁବଶ୍ୟ କାହ୍ନୁ ।"

(ଭକ୍ତମାଳିକା ପଞ୍ଚମ ଓ ଷଷ୍ଠ ଅଧ୍ୟାୟ)

ଏ ଭକ୍ତକବିମାନଙ୍କ ନାମୋଲ୍ଲେଖ ବାଲଗାଁ ଦାସଙ୍କ ସମୟ ନର୍ଦ୍ଧାରଣରେ ଅନେକ ପରିମାଣରେ ସାହାଯ୍ୟ କରେ । ସେହି ଦୃଷ୍ଟିରୁ ବିଚାରକରି ଦେଖିଲେ, କବି ବାଲଗାଁ ଦାସଙ୍କ ପ୍ରଦତ୍ତ ପଞ୍ଚସଖାଙ୍କ ଭକ୍ତ ପରୀକ୍ଷା ଓ ଜଗନ୍ନାଥ ଦାସଙ୍କଠାରୁ ଦୀକ୍ଷା ଗ୍ରହଣ, ପ୍ରତାପରୁଦ୍ର ଦେବଙ୍କୁ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସ୍ୱପ୍ନାଦେଶ ପ୍ରଭୃତି ଭକ୍ତିକ କଳ୍ପନା ବୋଲି କୁହାଯାଇପାରେ ! ଅନ୍ୟଥା ତାଙ୍କ ସମୟ ଖ୍ରୀ: ଅ: ୧୭୨୦ ପୂର୍ବରୁ ହେବା ଆଦୌ ସମ୍ଭବ ନୁହେଁ । □□□

# ବାଲିଗାଁ ଦାସଙ୍କ ଭକ୍ତିଭାବନା

ଭକ୍ତକବି ଦାସିଆ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ପିଲାଟି ଦିନରୁ ଭକ୍ତି ପ୍ରଦର୍ଶନ କରୁଥିଲେ । ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତିରସାମୃତ'ରୁ ଜଣାଯାଏ ଯେ, ଦାସିଆ ପୁରୀର ନିକଟବର୍ତ୍ତୀ ସ୍ଥାନ ବାଲିଗାଁରେ ଥିଲେ ମଧ୍ୟ ପ୍ରାୟ ପ୍ରୌଢ଼ାବସ୍ଥା ପର୍ଯ୍ୟନ୍ତ ଶ୍ରୀ ଠାକୁରଙ୍କ ଦର୍ଶନ ଲାଗି ଯାଇନଥିଲେ । ବିଶେଷତଃ ହିନ୍ଦୁ ସମାଜରେ 'ଖନ୍ଦାଳ' ମାନଙ୍କୁ ଅନୁନ୍ନତ ଶ୍ରେଣୀସ୍ଥ ବୋଲି ବିଚାର କରାଯାଉଥିବାରୁ ଦାସିଆ ଶ୍ରୀମନ୍ଦିର ଭିତରକୁ ଯାଇ ଦର୍ଶନ କରିବାର ଅଧିକାର ପାଇନଥିଲେ । ତେଣୁ କୌଣସି ଏକ 'ଶ୍ରୀଗୁଣ୍ଡିଚା'ରେ ଯାଇ ପ୍ରଭୁଙ୍କୁ ଦର୍ଶନ କରିବା ଲାଗି ସେ ମନସ୍ଥ କରିଥିଲେ ।

ଦୈବାତ୍ ରାଜପଥରେ ଯାଉଥିବା ଯାତ୍ରୀମାନଙ୍କୁ ଦେଖି ପୁରୀ ଯିବାଲାଗି ତାଙ୍କର ଉତ୍କଣ୍ଠା ଜାତ ହୋଇଥିଲା । ସେହି ପ୍ରଥମ ଦର୍ଶନରେ ତାଙ୍କ ମନର ବହୁଦିନର ଆକାଙ୍‌କ୍ଷା ପୂର୍ତ୍ତି ହୋଇଥିଲା ଏବଂ ସେ ତଦ୍‌ଗତ ଭାବରେ ପ୍ରଭୁଙ୍କ ଦର୍ଶନ କରିଥିଲେ । ଶ୍ରୀଚତୁର୍ଦ୍ଧା ମୂର୍ତ୍ତିଙ୍କର ଅବଲୋକନରେ ଦାସିଆ ନିଜକୁ ସମ୍ପୂର୍ଣ୍ଣରୂପେ ପ୍ରଭୁପଦରେ ଅର୍ପଣ କରିଦେଇ ଆତ୍ମାନନ୍ଦ ସୁଖ ଅନୁଭବ କରିଥିଲେ । ସେ ଘରକୁ ଫେରିଆସିଥିଲେ ସତ; କିନ୍ତୁ ଚରାଚର ସର୍ବତ୍ର ସେ ପ୍ରତ୍ୟକ୍ଷ କଲେ 'ଚକାଡୋଳା', 'ବଳୟାର ଭୁଜ' ଶ୍ରୀଜଗନ୍ନାଥଙ୍କ ଅସ୍ତିତ୍ୱ ।

ଅଦ୍ୟାପି ଓଡ଼ିଶାରେ ପ୍ରଥା ରହିଛି—ପ୍ରଥମଥର ଲାଗି ଶ୍ରୀକ୍ଷେତ୍ର ଯାଇ ଫେରି ଆସିଲେ, ନୂଆ ହାଣ୍ଡିରେ ରନ୍ଧାଯାଇଥିବା ଅନ୍ନ ଭୋଜନ କରାଯାଏ । ସେହି ରୀତି ଅନୁସାରେ ଦିନେ ଦାସିଆଙ୍କ ପତ୍ନୀ ସ୍ୱାମୀଙ୍କ ପାଇଁ ନୂଆ ହାଣ୍ଡିରେ ରାନ୍ଧିଥିଲେ । ସେ ନିତାନ୍ତ ଦରିଦ୍ର ହୋଇ ଥିବାରୁ, ପତ୍ନୀ ନୂଆ ହାଣ୍ଡିରେ 'ଯାଉ' କରି ଶାଗ ମେଞ୍ଚାଏ ସିଝାଇ ସ୍ୱାମୀଙ୍କୁ ଖାଇବାଲାଗି ଡାକଲେ । 'ଯାଉ' ହାଣ୍ଡି ଉପରେ ମେଞ୍ଚାଏ କଳା ମଚ୍ ମଚ୍ ଶାଗଖରଡ଼ା ଥୁଆ ହୋଇ-ଥିବାର ଦେଖି ଭକ୍ତ ଦାସିଆଙ୍କର ଭାବାନ୍ତର ଜାତହେଲା । ସେ ହାଣ୍ଡିଟିକୁ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି, 'ଯାଉ' ତକ ଡୋଳାର ଧଳାପଟ ଓ ଶାଗତକ କଳାଡୋଳା ରୂପେ ଚିନ୍ତାକରି ତଦ୍‌ଗତ ଭାବନାରେ ବିଭୋର ହୋଇଉଠିଲେ । ନିଜ ଘରେ ପ୍ରଭୁଙ୍କ ଅସ୍ତିତ୍ୱ ଅନୁଭବ କରି ଦାସିଆ ବ୍ରହ୍ମାନନ୍ଦ ସୁଖ ଅନୁଭବ କରିବା ସଙ୍ଗେ ସଙ୍ଗେ ତାଳମାରି ନୃତ୍ୟ କରିବାକୁ ଲାଗିଲେ । ଏହା ଦେଖି ସମସ୍ତେ ତାଙ୍କୁ ପାଗଳ ବୋଲି ମନେ କଲେ ।

ଭକ୍ତ ଭକ୍ତିର ବିଭିନ୍ନ ସୋପାନ ଅତିକ୍ରମ କରିବା ପରେ ତାଦାତ୍ମ୍ୟ ଅବସ୍ଥାରେ ଉପନୀତ ହୁଏ । ସେହି ଅବସ୍ଥାରେ ତା'ର ବାହ୍ୟଜ୍ଞାନ ବିଲୋପ ହୋଇଯାଏ; ସେ ସର୍ବଘଟରେ ପରମାତ୍ମାଙ୍କ ଅସ୍ତିତ୍ୱ ଅନୁଭବ କରେ । ପୁରାଣବର୍ଣ୍ଣିତ ମୁନିଋଷିମାନେ ଯୁଗ ଯୁଗ ଧରି ତପସ୍ୟାରତ ହୋଇଥିଲେ ହେଁ, 'ତାଦାତ୍ମ୍ୟ' ଅବସ୍ଥାରେ ପହଞ୍ଚିବା ପୂର୍ବରୁ ତପୋଭ୍ରଷ୍ଟ ହୋଇଛନ୍ତି । ସାଂସାରିକ ଲୋଭମୋହାଦି ତାଙ୍କୁ ଆଘୃଷ୍ଟ କରିନେଇଛି, ପୁଣି ସେମାନେ ଆତ୍ମଜ୍ଞାନ ବଳରେ ସମାଧିସ୍ଥ ହୋଇ 'ବ୍ରହ୍ମପ୍ରାପ୍ତି'ର ମାର୍ଗ ସରଳ କରିପାରିଛନ୍ତି ।

ଦର୍ଶନ ଶାସ୍ତ୍ରର ମତାନୁସାରେ 'ପୂର୍ବବାସନା' ନଥିଲେ ସେ ପ୍ରକାର 'ତାଦାତ୍ମ୍ୟ' ଭାବ ସହଜରେ ପ୍ରାପ୍ତହୁଏ ନାହିଁ । 'ବାଲିଗାଁ ଦାସିଆ ଭାଗବତ'ରୁ ଜଣାଯାଏ ଯେ, ଏଥି ପୂର୍ବରୁ ବାଲିଗାଁ ଦାସ ତିନିଜନ୍ମ ହୋଇ ସାରିଥିଲେ—

"ବାଲିଗାଁ ଦାସିଆ ଯେ ନାମ । ଏ କୁଳେ କର୍ମା କଲି ଜନ୍ମ ॥
ଏଠାକୁ ପ୍ରକାଶିବ ନାମ । ତୁମ୍ଭେ ହୋଇବ ତିନି ଜନ୍ମ ॥"
× × ×
ଏବେ ଆମ୍ଭର ପାଶେ ଥାଅ । ବାସନା ଯେନି ଜନ୍ମହୁଅ ॥
ଯେ ଯାହା ବେଳେ ଜନ୍ମ ହୋଇ । ବାସନା ଉଦେ ହେବ ଯାଇ ॥"

(ବାଲିଗାଁ ଦାସିଆ ଭାଗବତ—
ପ୍ରଥମ ଅଧ୍ୟାୟ, ୮୧,୮୨,୮୩,୮୪ ପଦ)

କେବଳ ଏହି ପୁସ୍ତକରେ ନୁହେଁ 'ଭକ୍ତମାଳିକା' ପୁସ୍ତକର ଦ୍ୱିତୀୟ ଅଧ୍ୟାୟରେ ପ୍ରଭୁ ଜଗନ୍ନାଥ ଦାସିଅଙ୍କର ସାତ ଜନ୍ମ ହୋଇଥିବାର ସୂଚନା ଦେବା ସଙ୍ଗେ ସଙ୍ଗେ ଦ୍ୱିତୀୟ ପର୍ଯ୍ୟାୟରେ ସେ ବ୍ରାହ୍ମଣ ଘରେ ସମ୍ଭବିଥିବାର ପ୍ରଭୁ ଶ୍ରୀମୁଖ ବାଣୀ ଶୁଣାଇଛନ୍ତି । ସେ ବ୍ରାହ୍ମଣ ଘରେ ଜନ୍ମ ହୋଇ ଅନୀତି ଆଚରଣ କରିବାରୁ, ତାଙ୍କୁ ଶୂଦ୍ର ବାଉରିକୁଳରେ ଜାତ ହେବାକୁ ପଡ଼ିଲା ବୋଲି ଉକ୍ତ ପୁସ୍ତକରୁ ଜଣାଯାଏ—

"ପୂର୍ବେ ତୋହର ଜନ୍ମ କହିବାକ କର୍ମ କାହିଁରୁ ହୋଇଲୁ ଜାତ ।
ଶୂଦ୍ରକୁଳେ ତୋର ତିନିଜନ୍ମ ଗଲା ଦଣ୍ଡାରେ ବସିଲୁ ଏତ ॥
× × ×
ବ୍ରାହ୍ମଣ ଘରେ ତୁ ଜନ୍ମ ହୋଇଥିଲୁ ତିନିଜନ୍ମ ପରିଯନ୍ତେ ।
ପୂଜାରେ ତୁମ୍ଭର ଅନୀତି ହୋଇଲା ପାପ ଲାଗିଲା ଯୁଗତେ ॥
ତେଣୁ କରି ତୁମ୍ଭେ ବାଉରି ହୋଇଲ ହୀନକର୍ମ କଲ ଯେତେ ।"

ଏଣୁ ନିଶ୍ଚିତ ଭାବରେ ଧାରଣା କରିହୁଏ ଯେ ବାଲିଗାଁ ଦାସଙ୍କର ପୂର୍ବବାସନା ବଳରୁ ସେ ପ୍ରଭୁଙ୍କ ଦର୍ଶନମାତ୍ରେ 'ତଦ୍‌ଗତ' ଭାବନାରେ ଲୀନ ହୋଇଗଲେ ଏବଂ କାମ-କ୍ରୋଧାଦି ସାଂସାରିକ ବାଧାବନ୍ଧନ ତ୍ୟାଗକରି ଏକାଗ୍ରତାର ସହିତ 'ଦାସ୍ୟଭକ୍ତି' ଡୋରିରେ ପ୍ରଭୁଙ୍କୁ ବାନ୍ଧି ପାରିଲେ ।

ଆଲୋଚିତ 'ଭାଗବତ' ଓ 'ଭକ୍ତମାଳିକା' ପୋଥିର ବିବରଣୀ କବିଙ୍କ ଭାବୁକ କଳ୍ପନା ହେବା ଅସମ୍ଭବ ନୁହେଁ । ଶ୍ରୀ ଜଗନ୍ନାଥ ଦାସିଆଙ୍କ ଭକ୍ତିଭାବନାରେ ଆକର୍ଷିତ ହୋଇ ତାଙ୍କ ଶୟନ କକ୍ଷକୁ ଆସି ଅଭୟଦାନ କରିବା ବୃତ୍ତାନ୍ତ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ଯେପରି ଭାବରେ ବର୍ଣ୍ଣିତ ହୋଇଛି ଏବଂ ପରବର୍ତ୍ତୀ ପ୍ରକରଣରେ 'ନଡ଼ିଆ ପଠାଇବା' ଓ 'ଆମ୍ବ ନେବା' ପ୍ରଭୃତି ବିଷୟ ଅନୁରୂପ ଭାବୁକ ପରିକଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ ।

ତଦ୍‌ଗତମନା ହେଲେ ତଲ୍ଲୀନତାବଶତଃ ଅନେକ ସମୟରେ 'ତାଦାତ୍ମ୍ୟଭାବ' ମନରେ ଜାତହେବା ଆଦୌ ଅସମ୍ଭବ ନୁହେଁ । ଦାସିଆ ବାଉରିକୁଳରେ ଜାତହୋଇ ଶ୍ରୀଜଗନ୍ନାଥଙ୍କ ସେବାରେ ଏପରି ଦତ୍ତଚିତ୍ତ ହୋଇଥିଲେ ଯେ, ପ୍ରଭୁଙ୍କ ସହିତ କଥାବାର୍ତ୍ତା କରୁଥିବାପରି ତାଙ୍କୁ ବୋଧହେଉଥିଲା । ତେଣୁ ସେ ଅନ୍ତଃଚକ୍ଷୁରେ ପ୍ରଭୁଙ୍କ ସାନ୍ନିଧ୍ୟ ପାଇ-ପାରୁଥିଲେ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସହିତ ତାଙ୍କ ଆଲୋଚନାର ଯେଉଁ ବିବରଣୀ 'ଆଗତ ଭବିଷ୍ୟ' ପୋଥିରେ ଲିପିବଦ୍ଧ ହୋଇଛି, ସେ ଘଟଣାକୁ ଜଣେ ଅନନ୍ୟ ଭକ୍ତ ମନର 'ତଦ୍‌ଗତଭାବନା' ବୋଲି କହିଲେ ବାସ୍ତବ ଦୃଷ୍ଟିକୋଣରୁ ଅସମୀଚୀନ ହେବ ନାହିଁ । ସେହିପରି ପଞ୍ଚସଖାଙ୍କ ଆଗମନ ପ୍ରସଙ୍ଗରେ ଦାସିଆଙ୍କ କୁଟୀରରେ ଶ୍ରୀଠାକୁରଙ୍କ ପ୍ରବେଶ, ତାଙ୍କୁ ଉପଦେଶ ତଥା ଅଭୟପ୍ରଦାନ ସେହିପରି 'ତାଦାତ୍ମ୍ୟ' ଭକ୍ତିର ଉଦାହରଣ ।

ଉଭୟ ଆଗତଭବିଷ୍ୟ ଓ ଭକ୍ତମାଳିକା ପୁସ୍ତକରେ ଭକ୍ତକବି ବାଳଗାଁ ଦାସ ଜନସମାଜ ପ୍ରତି ଯେଉଁ ଭବିଷ୍ୟବାଣୀ ଶୁଣାଇଛନ୍ତି, ତାହା ପଞ୍ଚସଖା ଯୁଗରୁ ଆରମ୍ଭ ହୋଇ-ଥିଲା । ପଞ୍ଚସଖାଙ୍କ ମଧ୍ୟରେ ମହାପୁରୁଷ ଅଚ୍ୟୁତାନନ୍ଦ ସର୍ବାପେକ୍ଷା ଅଧିକ ପୁସ୍ତକ ରଚନା କରିଥିଲେ ଏବଂ ପ୍ରତ୍ୟେକ ପୁସ୍ତକରେ ଊଣାଅଧିକ ସେ ଜନସାଧାରଣଙ୍କ ଲାଗି ଭବିଷ୍ୟବାଣୀ ଶୁଣାଇଛନ୍ତି । ଭବିଷ୍ୟବାଣୀ ବା ଚେତାବନୀ ମାଧ୍ୟମରେ ସେ ଲୋକଚରିତ୍ର ଗଠନ ପ୍ରତି ଅଧିକ ସଚେତନ ଥିଲେ । ତାଙ୍କ ସମୟରେ ଜନସାଧାରଣଙ୍କ ମଧ୍ୟରେ ଯେପରି ଆଚରଣ ପ୍ରକାଶ ପାଇଥିଲା, ସେଥିରେ ତାଙ୍କ ନିଷ୍ଠାପର ମନରେ ସନ୍ତୋଷ ଜାତ ହୋଇନଥିଲା । ସେ ଯେଉଁ ଧରଣର ଲୋକଚରିତ୍ର ଆଶା କରୁଥିଲେ, ଜନସମାଜରେ ସେପରି ବାତାବରଣ ନଥିଲା । ବିଶେଷତଃ ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟ ତୃତୀୟ ଦଶକଠାରୁ ରାଜ୍ୟଶାସନରେ ବିଶୃଙ୍ଖଳା ଦେଖାଦେଇଥିବାରୁ ଜନଜୀବନ ଶୃଙ୍ଖଳାହୀନ ହୋଇଉଠିଥିଲା । ପ୍ରସ୍ତରନାୟକ ଗଜପତି ପ୍ରତାପରୁଦ୍ର ଦେବ ଉତ୍ତର ଓ ଦକ୍ଷିଣାଞ୍ଚଳର ଶତ୍ରୁମାନଙ୍କ ଆକ୍ରମଣରେ ବିଚଳିତ ହୋଇ ଉଠିଥିଲେ; ବିଶେଷତଃ ଦକ୍ଷିଣାଞ୍ଚଳର ଶାସନକର୍ତ୍ତା ରାୟ ରାମାନନ୍ଦଙ୍କ ଔଦାସୀନ୍ୟ ତଥା ଉତ୍ତରାଞ୍ଚଳର ସେନାପତି ଗୋବିନ୍ଦ ବିଦ୍ୟାଧରଙ୍କ ଅସହଯୋଗ ମନୋଭାବ ଫଳରେ ଶାସନ-କ୍ଷେତ୍ରରେ ମହାନ୍ ସଙ୍କଟ ଦେଖା ଦେଇଥିଲା । ତାହା ଫଳରେ ଜନସାଧାରଣ ସର୍ବଦା ଆତଙ୍କିତ ହେବା ସଙ୍ଗେ ସଙ୍ଗେ ସୁବିଧାବାଦୀଙ୍କ ମନରେ ସ୍ୱାର୍ଥପରତା ଅତ୍ୟଧିକ ମାତ୍ରାରେ ସ୍ଥାନପାଇଥିଲା । ସ୍ୱାର୍ଥସଂଶ୍ଳିଷ୍ଟ ଆଚରଣ ଫଳରେ ଅସାଧୁତା ସମାଜରେ ମୁଣ୍ଡ ଟେକିଥିଲା ।

ଅଚ୍ୟୁତାନନ୍ଦ ପ୍ରଭୃତି ସାଧୁମାନେ ଜନଜୀବନର ଅନୈତିକତା ପ୍ରତି ଦୃଷ୍ଟିକ୍ଷେପ ଦେଇ, ନିଜ ନିଜର ସାଧନା ବଳରେ ତା'ର ନିରାକରଣ ଲାଗି ଯତ୍ନବାନ୍ ହୋଇଥିଲେ । ଦେଶବ୍ୟାପୀ ଅସନ୍ତୋଷ ତଥା ଅନୈତିକତାର ଦୂରୀକରଣରେ ଅସମର୍ଥ ହୋଇ ସେହି ମହାପୁରୁଷମାନେ 'ମାଳିକା', 'ଆଗତଭବିଷ୍ୟ' ଓ 'ସଂହିତା' ଆଦି ପୁସ୍ତକ ରଚନାକରି ଜନସାଧାରଣଙ୍କ ମଧ୍ୟରେ ପ୍ରଚାର କରାଇ, ଜନଜୀବନକୁ ଶୃଙ୍ଖଳିତ କରାଇବାର ପ୍ରୟାସ ଚଳାଇଥିଲେ । ଉକ୍ତ ପୁସ୍ତକଗୁଡ଼ିକରେ ଭକ୍ତକବିମାନେ ସମାଜର ଆଚରଣ ସମ୍ପର୍କରେ ଦିଗ୍‌ଦର୍ଶନ କରାଇବା ସଙ୍ଗେ ସଙ୍ଗେ ତା'ର ଘୋର ପରିଣାମ ସମ୍ବନ୍ଧରେ ସୂଚନା ଦେଇଥିଲେ ।

ଭକ୍ତକବି ବାଲଗାଁ ଦାସ ପଞ୍ଚସଖାଙ୍କ ପନ୍ଥା ଅନୁସରଣ କରି 'ଆଗତ ଭବିଷ୍ୟ' ଓ 'ଭକ୍ତମାଳିକା' ପୁସ୍ତକରେ ବହୁ ଅଭିମାନବୀୟ ଘଟଣାବଳୀର ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଭବିଷ୍ୟବାଣୀ ଶୁଣାଇଥିଲେ । ସେହି ମାଧ୍ୟମରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କ ମନର ଐକାନ୍ତିକ ଭକ୍ତିଭାବ ପ୍ରଦର୍ଶନ କରିଥିଲେ ।

କବି ବାଲଗାଁ ଦାସ 'ଆଗତଭବିଷ୍ୟ' ପୁସ୍ତକର ଆରମ୍ଭରେ ଗୋଟିଏ 'ମଙ୍ଗଳାଚରଣ' ଆରମ୍ଭ କରିଛନ୍ତି । ସାଧାରଣତଃ ଅନ୍ୟାନ୍ୟ କବିମାନେ ସ୍ୱ ଗ୍ରନ୍ଥରେ ନିଜର ଇଷ୍ଟଦେବଙ୍କୁ ପ୍ରାର୍ଥନା କରିଥାନ୍ତି । ପ୍ରସ୍ତୁତ ପୁସ୍ତକରେ କବି ଦାସିଆ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ 'ଶ୍ରୀୟାଦେବୀ ବର', 'ଶ୍ରୀଧର' କମଳାମନୋହାରୀ, ଶଙ୍ଖଚକ୍ର ଗଦା ପଦ୍ମଧାରୀ ତଥା ଦଶାବତାରକାରୀରୂପେ ବନ୍ଦନା କରିଛନ୍ତି ।

"ଜୟ ତୁ ଶ୍ରିୟା ଦେବୀ ବର । ବନ୍ଦଇ ନମସ୍ତେ ଶ୍ରୀଧର ॥
ବନ୍ଦଇ ଦେବ ନରହରି । କମଳା ଯାର ମନୋହାରୀ ॥
ବନ୍ଦଇ ଜୟ ଜଗନ୍ନାଥ । ସାରଙ୍ଗ ଗଦା ଶଙ୍ଖ ହସ୍ତ ॥
ନମଇ ଗଦା ପଦ୍ମ ଧାରୀ । ମତ୍ସ କୁରୁମ ରୂପ ଧରି ॥
ବନ୍ଦଇ ନମସ୍ତେ ବରଦ । ଶ୍ରୀଜଗନ୍ନାଥ ବଳଭଦ୍ର ॥
ମଧ୍ୟେ ସୋହଦ୍ରା ଦେବୀ ଶୋହେ । ଶ୍ୱେତ କୁଙ୍କୁମ ତାର କାୟେ ॥
ଅନାଦିରୂପେ ଅବତରି । ଲୀଳା ବିକାଶେ ମଞ୍ଚପୁରୀ ॥
× × ×
ଶ୍ରୀଜଗନ୍ନାଥଙ୍କ ଚରଣ । ବାଲଗାଁ ଦାସିଆ ଶରଣ ॥"

ଏହି ମଙ୍ଗଳାଚରଣ ପଦ୍ୟରୁ ସ୍ପଷ୍ଟ ଜଣାଯାଏ ଯେ, ବାଲଗାଁ ଦାସ ଦାସ୍ୟଭକ୍ତିରେ ପ୍ରଭୁଙ୍କ ପାଦପଦ୍ମରେ ଶରଣ ପଶି ନିଜକୁ କୃତାର୍ଥ କରିଥିଲେ । କେବଳ ସେତିକି ନୁହେଁ, ସେ ଜଣେ ଅଜ୍ଞବ୍ୟକ୍ତି, ତାଙ୍କ ପକ୍ଷରେ ଗ୍ରନ୍ଥ ଲେଖିବା ଆଦୌ ସହଜ ନୁହେଁ, ନିଜେ ପ୍ରଭୁ ଜଗନ୍ନାଥ ଭକ୍ତ ପାଇଁ 'ଲେଖନୀ ସଖା' ଧରି 'ଆଗତ' ଲେଖିଥିଲେ ବୋଲି ବାଲଗାଁ ଦାସ ନିଜର ନ୍ୟୂନତା ପ୍ରକାଶକରି ଲେଖିଛନ୍ତି—

"ଲେଖନ ସଞ୍ଜା କରେ ଧରି | ଆଗତ ଲେଖନ୍ତି ଶ୍ରୀହରି ||
ଲେଖିଲେ ପ୍ରଭୁ ପୀତବାସ | ଶରଣ ବାଲଙ୍ଗା ଯେ ଦାସ ||"

ପ୍ରଭୁଙ୍କ ପାଦପଦ୍ମରେ ଦାସଙ୍କର ଅଚଳା ଭକ୍ତି ଥିବାରୁ, ସ୍ୱରଚିତ ଗ୍ରନ୍ଥଟିକୁ ନିଜେ ଶ୍ରୀଜଗନ୍ନାଥ ଲେଖିଛନ୍ତି ବୋଲି ପ୍ରକାଶ କରି ସ୍ୱ ଦୀନତାର ପରିପ୍ରକାଶ କରିଛନ୍ତି । ପ୍ରାୟ ପ୍ରତ୍ୟେକ ଅଧ୍ୟାୟ ଶେଷରେ କବି ନିଜକୁ 'ମିଛୁଆଟୋକା' ଲେଖି ତାଙ୍କ ଉକ୍ତି ଯୁକ୍ତିକ ମିଥ୍ୟା ବୋଲି ପରୋକ୍ଷରେ ଜଣାଇଦେଇଛନ୍ତି ।

"ଏହାର ଟୀକା କଳିରସ | ମିଛୁଆ ଟୋକା କଲି ଆଶ ||"

ଦ୍ୱିତୀୟ ଅଧ୍ୟାୟ ଆରମ୍ଭରେ କବି ବାଲଙ୍ଗା ଦାସ ଅନୁରୂପ ଗୋଟିଏ ମଙ୍ଗଳାଚରଣର ଉଲ୍ଲେଖ କରି ନନ୍ଦନନ୍ଦନ ଇନ୍ଦ୍ରନୀଳମଣି କାନ୍ତି ଶ୍ରୀକୃଷ୍ଣଙ୍କ ସହିତ ନୀଳଗିରିବିହାରୀ ଶ୍ରୀଜଗନ୍ନାଥଙ୍କୁ ଅଭେଦ କଳ୍ପନାକରି ଲେଖିଛନ୍ତି—

"ନମସ୍ତେ ଦେବ ଦାମୋଦର | ଡମ୍ବରୁ କଟୀ ପୀତାମ୍ବର . ||
ନମସ୍ତେ ନନ୍ଦର ନନ୍ଦନ | ଶ୍ରୀଅଙ୍ଗେ ଅମୂଲ୍ୟ ବସନ ||
କି ଇନ୍ଦ୍ର ନୀଳମଣି କାନ୍ତି | ଶ୍ରୀମୁଖ ସୁଧାକର ଜ୍ୟୋତି ||
ନମସ୍ତେ ଦେବ ଜଗନ୍ନାଥ | ନମସ୍ତେ ଶଙ୍ଖ ଚକ୍ର ହସ୍ତ ||
ସିଂହାସନରେ ବିଜେକରି | ଚତୁର୍ଦ୍ଧା ମୂରତି କି ଧରି ||"

'ଭକ୍ତିମାଳିକା' ପୁସ୍ତକରେ କବି ବାଲଙ୍ଗା ଦାସ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ନିରଞ୍ଜନ, ବିଶ୍ୱରୂପ, ବିଶ୍ୱବାସ, ଅନାଦି ରୂପେ ପ୍ରମାଣ ନିବେଦନ କରିବା ସଙ୍ଗେ ସଙ୍ଗେ ମହାପ୍ରଭୁଙ୍କୁ ଦଶାବତାର ରୂପେ ଭକ୍ତି ଅର୍ଘ୍ୟ ଅର୍ପଣ କରିଛନ୍ତି ।

"ପୁଣି ପୁଣି ନମସ୍କାର କରନ୍ତି ଦାସେ ଜାଣ ।
ଆଦି ଅନାଦି ବିଶ୍ୱବାସ ତୁମ୍ଭେ ନିରଞ୍ଜନ ॥
ନମସ୍ତେ ବାସୁଦେବାୟ ନମସ୍ତେ ବିଶ୍ୱରୂପ ।
ନମସ୍ତେ କୂର୍ମରୂପ ବରେହା ନୃସିଂହ ସରୂପ ॥
× × ×
ହଳୀ ରାମ ବଳରାମ ଶରଣ ମୋହର
କଳଙ୍କୀ ରୂପକୁ ମୋର କୋଟି ନମସ୍କାର ॥"

'ଭକ୍ତିମାଳିକା'ର ମଙ୍ଗଳାଚରଣରୁ ଜଣାଯାଏ ଯେ, କବି ବାଲଙ୍ଗା ଦାସ 'ଆଗତଭବିଷ୍ୟ' ପୁସ୍ତକର ରଚନା ପରେ ପ୍ରସ୍ତୁତ ପୁସ୍ତକଟିକୁ ରଚନା କରିଥିଲେ । କାରଣ କବିଙ୍କର ରଚନା ଶୈଳୀରୁ ଜଣାଯାଏ ଯେ, କବି 'ସାକାର' ଉପାସନାରୁ ଯାଇ 'ନିରାକାର' ଉପାସନା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଯଦିଓ କବି ଦଶାବତାର ରୂପେ ଶ୍ରୀଜଗନ୍ନାଥଙ୍କୁ 'ପ୍ରଣାମ' କରିଛନ୍ତି, ତଥାପି 'ଅନାଦି','ନିରଞ୍ଜନ','ବିଶ୍ୱରୂପ'ଆଦି ଶବ୍ଦ ପ୍ରୟୋଗ

କରୁଥିବାରୁ, ଏହି ପୁସ୍ତକଟି କବିଙ୍କର ପରିଣତ ବୟସରେ ରଚିତ ହୋଇଥିବାର ଅନୁମାନ କରିବା ସ୍ୱାଭାବିକ । ବିଶେଷତଃ ପଞ୍ଚସଖାଙ୍କ ସହିତ କବିଙ୍କର ତାତ୍ତ୍ୱିକ ଆଲୋଚନାର ଯେଉଁ ଅବତାରଣା କରାଯାଇଛି, ସେଥିରୁ ସ୍ପଷ୍ଟ ହୁଏ ଯେ, 'ଭକ୍ତମାଳିକା' ପୁସ୍ତକଟି ବାଲଗିଁ ଦାସଙ୍କର ବୃଦ୍ଧାବସ୍ଥାର ରଚନା ।

ଦୁଇଟିଯାକ ପୁସ୍ତକରେ ବର୍ଣ୍ଣିତ କବିଙ୍କ ମଙ୍ଗଳାଚରଣ ତଥା ପ୍ରତିପାଦ୍ୟ ବିଷୟ ପ୍ରତି ଦୃଷ୍ଟି ଦେଲେ ସ୍ପଷ୍ଟ ଜାଣିହୁଏ, ବାଲଗିଁ ଦାସ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଅନନ୍ୟ ଭକ୍ତ ଥିଲେ ଏବଂ ସାଂସାରିକ ଲୋଭ, ମୋହ, ତ୍ୟାଗକରି 'ତ୍ୱୟା ହୃଷିକେଶ ହୃଦିସ୍ଥିତେନ ଯଥା ନିଯୁକ୍ତୋଽସ୍ମି ତଥା କରୋମି' ନୀତିରେ ବିଶ୍ୱାସ ରଖିଥିଲେ ।

କବି ବାଲଗିଁ ଦାସ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ କୃପାରୁ ଜଣେ 'ସିଦ୍ଧ ପୁରୁଷ' ଭାବରେ ଖ୍ୟାତି ଅର୍ଜନ କରିଥିଲେ ଏବଂ ତତ୍କାଳୀନ ଭକ୍ତମଣ୍ଡଳୀରେ ତାଙ୍କର ସୁଖ୍ୟାତି ରହିଥିଲା ।

□□□

# କବି ଓ ତତ୍ତ୍ୱଜ୍ଞାନୀ ବାଲିଗାଁ ଦାସ

ଭକ୍ତକବି ପୁରୀଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀଗ୍ରାମ ବାଲିଗାଁରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମ ସମୟ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ପ୍ରମାଣ ମିଳି ନଥିଲେ ହେଁ, ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟ ଦଶକରୁ ଆରମ୍ଭ କରି ଅଷ୍ଟାଦଶ ଶତାବ୍ଦୀର ତୃତୀୟ ଦଶକ ସୁଦ୍ଧା ଜୀବିତ ଥିବାର ପ୍ରମାଣ ମିଳୁଛି । ସେହି ସମୟଟି ଓଡ଼ିଆ ସାହିତ୍ୟର ସ୍ୱର୍ଣ୍ଣ ଯୁଗ । ସେତେବେଳେ ଓଡ଼ିଶା ରାଜନୈତିକ ଦୁର୍ବିପାକ ମଧ୍ୟରେ ଗତି କରୁଥିଲେ ମଧ୍ୟ ବୈଷ୍ଣବ କବିମାନେ ମଠ, ମନ୍ଦିର ତଥା ସାଧନା କ୍ଷେତ୍ରରେ ଆଶ୍ରୟ ଗ୍ରହଣ କରି ବିଭିନ୍ନ ଧରଣର ଭକ୍ତିସଙ୍ଗୀତର ରଚନାରେ ସାହିତ୍ୟଭଣ୍ଡାରକୁ ସମୃଦ୍ଧ କରିଥିଲେ । ଓଡ଼ିଆ ସାହିତ୍ୟର ମହାସ୍ରୋତ ଗଜପତି ରାଜା କପିଳେନ୍ଦ୍ର ଦେବଙ୍କ ରାଜତ୍ୱରୁ ଆରମ୍ଭ ହୋଇଥିଲେ ମଧ୍ୟ, ପ୍ରକୃତରେ ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ସମୟରେ ପଞ୍ଚସଖାଗଣ ଏହି ମହାସ୍ରୋତରେ ବିଭିନ୍ନ ଧାରା ମିଶାଇଦେଇ ଓଡ଼ିଆ ସାହିତ୍ୟକୁ ସମୃଦ୍ଧି ପଥରେ ଅଗ୍ରସର କରାଇପାରିଥିଲେ । ପଞ୍ଚସଖାଗଣ ରାମାୟଣ, ହରିବଂଶ, ଭାଗବତ ପ୍ରଭୃତି ଲୋକପ୍ରିୟ ଗ୍ରନ୍ଥମାନ ରଚନାକରିବା ସଙ୍ଗେ ସଙ୍ଗେ ଗୀତା, ସାହିତ୍ୟ, ଭବିଷ୍ୟ ଆଦି ପୁସ୍ତକ ରଚନାକରି ଜନଜୀବନକୁ କାବ୍ୟମୟ କରିବା ସଙ୍ଗେ ସଙ୍ଗେ ସମାଜସଂସ୍କାର ଦିଗରେ ମହାନ୍ ବିପ୍ଳବ ଆରମ୍ଭ କରିଥିଲେ । ସେମାନଙ୍କ କାବ୍ୟକବିତାର ଅନୁକରଣ ତଥା ଅନୁସରଣରେ ଓଡ଼ିଶାର ବହୁ ସାହିତ୍ୟରଥୀ ସ୍ୱୀୟ ରଚନାଦ୍ୱାରା ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବକୁ ଉନ୍ନତ କରାଇପାରିଥିଲେ ।

ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀଟି ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ଅତ୍ୟନ୍ତ ଦୁର୍ବିପାକର ସମୟ ହୋଇଥିଲେ ହେଁ, କବି ବାଲିଗାଁ ଦାସ ସେହି ଘଡ଼ିସନ୍ଧି ମୁହୂର୍ତ୍ତରେ ଜନ୍ମଗ୍ରହଣ କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅପାର କରୁଣା ବଳରେ ଦୁଇଖଣ୍ଡି ପୁସ୍ତକ ରଚନା କରିଥିଲେ । ଶୁଣାଯାଏ ଯେ, ସେ ଆଦୌ ପାଠଶାଠ ପଢ଼ି ନଥିଲେ, ତେଣୁ ତାଙ୍କଦ୍ୱାରା ପୁସ୍ତକ ରଚନା ଏକ ଅଲୀକ କଳ୍ପନା ! କିନ୍ତୁ ପ୍ରତିଭା ଓ ଶିକ୍ଷା ଦୁଇଟି ପୃଥକ୍ ବିଭାଗ । ପ୍ରତିଭାଶାଳୀ, ବିଶେଷତଃ ଦୈବୀପ୍ରଭାବରେ ପ୍ରଭାବିତ ବ୍ୟକ୍ତିପକ୍ଷରେ ଅକ୍ଷରଗତ ଶିକ୍ଷା ଗୋଟିଏ ଗୌଣ ବିଷୟ । ଐଶୀଶକ୍ତି ବଳରେ ମୋଚି ରୈଦାସ, ଯବନ କବି କବୀର ଦାସ, ହିନ୍ଦୀ ସାହିତ୍ୟର ଶ୍ରୀକୃଷ୍ଣ ଭକ୍ତିଧାରାର କବି ସୁରଦାସ ମହାକବିରୂପେ ଯଶସ୍ୱୀ ହୋଇପାରିଥିଲେ । ତେଣୁ ଶ୍ରୀଜଗନ୍ନାଥଙ୍କ ଅପାର କରୁଣା ଲାଭକରିଥିବା ଭକ୍ତ ଦାସିଆଙ୍କ ରଚନା ସମ୍ବନ୍ଧରେ କୌଣସି ଶଙ୍କା ଜାତହେବା ଆଦୌ ସମୀଚୀନ ନୁହେଁ ।

ଭକ୍ତକବି ବାଲିଗାଁ ଦାସଙ୍କ ନାମରେ ଭଣିତ ଦୁଇଖଣ୍ଡି ପୁସ୍ତକ 'ଆଗତ ଭବିଷ୍ୟ ବା 'ବାଲିଗାଁ ଦାସିଆ' ଭାଗବତ ଓ 'ଭକ୍ତ ମାଳିକା' ଲୋକଲୋଚନର ଆଲୋଚନା ପରିସର ମଧ୍ୟରୁ ଆସିପାରିଛି । ଦୁଇଖଣ୍ଡି ଯାକ ପୁସ୍ତକ ପାଠକଲେ କବି ଜଣେ ଯୋଗୀଶକ୍ତିସମ୍ପନ୍ନ ତତ୍ତ୍ୱଜ୍ଞାନୀ ଥିବାର ଧାରଣା କରିହୁଏ ।

କବିଙ୍କ ରଚିତ 'ଆଗତ ଭବିଷ୍ୟ' ପୁସ୍ତକଟି ପଞ୍ଚସଖାଙ୍କ ଅନୁସରଣରେ ଲିଖିତ ଖଣ୍ଡିଏ ବିଶୁଦ୍ଧ 'ମାଳିକା' ଗ୍ରନ୍ଥ । କବି ସେଥିରେ ଯେଉଁ ଭବିଷ୍ୟବାଣୀ ଶୁଣାଇଛନ୍ତି, ତାହା ତାଙ୍କରି ସମୟର ଅନେକ ଲିଭିଯାଇଥିବା ଘଟଣା । ଅନ୍ୟଥା କବି ଇତିହାସ ସହିତ ତାଳଦେଇ ଏତେ ସତ୍ୟ ଘଟଣା ଉଲ୍ଲେଖ କରିବାରେ ସମର୍ଥ ହୋଇନଥାନ୍ତେ । କବି ତତ୍କାଳୀନ ସମାଜରେ ଲୋକପ୍ରିୟ ଛନ୍ଦ 'ଭାଗବତବାଣୀ'ରେ ରଚନା କରି ପୁସ୍ତକର ନାମ 'ଭାଗବତ' ରଖିଛନ୍ତି । ପ୍ରଥମତଃ ସେତେବେଳକୁ ଜଗନ୍ନାଥ ଦାସଙ୍କ ଭାଗବତ ଲୋକମୁଖରେ ପ୍ରସିଦ୍ଧି ଅର୍ଜନ କରିସାରିଥିଲା; ଦ୍ୱିତୀୟତଃ କବି ନିଜକୁ ଜଗନ୍ନାଥଙ୍କ ଶିଷ୍ୟ ବା ଶିଷ୍ୟପରମ୍ପରାର ବୋଲି ମନେକରୁଥିବାରୁ ଗୁରୁଙ୍କ ପଦାଙ୍କ ଅନୁସରଣ କରି ସେ ଭାଗବତ ରଚନା କରିବାରେ ମନ ବଳାଇଥିଲେ । ବିଶେଷତଃ ନବାକ୍ଷରୀ ବୃତ୍ତ 'ଭାଗବତ' ପରି ଦାସିଆଙ୍କ ରଚନାରେ ଲୋକଶିକ୍ଷାମୂଳକ ବିଷୟର ଅବତାରଣା କରାଯାଇ ଥିବାରୁ ଏହାର ନାମ 'ଭାଗବତ' ଓ ବୃତ୍ତ 'ନବାକ୍ଷରୀ' ହେବା ସମୀଚୀନ ତଥା ସମୟାନୁକୂଳ ବୋଲି କହିବା ଅସମୀଚୀନ ନୁହେଁ ।

କବି ଦାସିଆଙ୍କ ପଦଗୁଡ଼ିକରୁ ପ୍ରାଚୀନ ଶବ୍ଦ ପ୍ରୟୋଗର ପ୍ରମାଣ ପ୍ରତି ଛନ୍ଦେ ଫୁଟି ଉଠେ । ଅବଶ୍ୟ ପରବର୍ତ୍ତୀ ନକଲକାରମାନଙ୍କ ଯୋଗୁ ଅନେକ ପ୍ରାଚୀନ ଶବ୍ଦ ଅର୍ବାଚୀନ ଶବ୍ଦରେ ପରିଣତ ହୋଇଥିବ, ତଥାପି ଯେତିକି ପ୍ରାଚୀନ ଶବ୍ଦ 'ଆଗତ ଭବିଷ୍ୟ' ପୁସ୍ତକରେ ଅଦ୍ୟାପି ସଂରକ୍ଷିତ ହୋଇଛି, ତନ୍ମଧ୍ୟରୁ କେତୋଟିର ଉଲ୍ଲେଖ ଏଠାରେ କରାଗଲା—

'ଅଇଛୁ, ଅବହେଳେ, ଅଭ୍ୟାନ, ଅର୍ବୁଦେକ, ଅସ୍ତ୍ରମା (ଅଶ୍ୱତ୍ଥାମା), ଅସୁଆର, ଉଦ୍‌ଯୋଗ, ଓଲଗ, କଟକାଇ, କହିବାକ, କାନ୍ତାମୀ, ଖେଦ, ଖେଡ଼, ଗୃଧିନୀ, ଗୋପ୍ୟାନ, ଗୋଣାଣୀ, ଘୃତକା, ଜୀବନ୍ତା, ଟାହି, ଠିକେ, ତରିଜା, ଢଉଣ, ଥାବର, ଥୋକାୟେ, ଦବନ, ଦମନ (ଯବନ), ଦାଢ଼, ଧାଡି, ଧାଡିକାରେ, ପାଦାନ୍ତ, ପାଦାନ୍ତ ବଳ, ପାଣ୍ଡୋଇ, ଫୁଟିଲେ (କଷ୍ଟପାଇଲେ), ବିଟାଳ, ଭୟାଙ୍କାର, ଭିକ୍ଷାଶୀ, ମଚ୍ଛ, ମଣାଇଁ, ମୁଗୁଲ, ମେଲଛ (ମ୍ଲେଚ୍ଛ), ଯୁକେଷ୍ଟି, ରାଜୁତ, ଶୁଣିମା, ଶାର୍ଗୁଣା, ସରିଷ, (ସଦୃଶ), ସଞ୍ଚା, ସମ୍ଭାଇ, ସୋହଦ୍ରା (ସୁଭଦ୍ରା), ହାକ, ହୋନ୍ତ' ଇତ୍ୟାଦି ।

ଉକ୍ତ ପ୍ରାଚୀନ ଶବ୍ଦଯୋଜନାରେ ତାଙ୍କର ପ୍ରତିଭା ବେଶ୍ ପରିସ୍ଫୁଟ ହେଉଥିଲେହେଁ କେତୋଟି ପଦ ପ୍ରୟୋଗରେ ସେ ଭାଗବତକାର ଶ୍ରୀ ଜଗନ୍ନାଥ ଦାସଙ୍କୁ ଅନୁସରଣ କରିଛନ୍ତି—

"ଅଭାବ କରେ ଯେ ଆତ୍ମଙ୍କୁ । ତାର ନ ଘଟେ ତାହାଠାକୁ ॥

× × ×

ଶୁଣି ବାଲିଗାଁ ଦାସ ହସି । କୁଶଳ କହନ୍ତି ବିଶ୍ୱାସି ॥
× × ×
ଓଡ଼ିଶା ରକ୍ତିତ ହୋଇଣ । ଦଶ ଯେ ଅଙ୍କ କଟାଇଣ ॥
× × ×
ଦାନ୍ତିଆ ପଦ୍ମିଣିକ ମୀନ । ତେମନ୍ତ ଆସିବେ ଦମନ ॥
× × ×
କର୍ମ ବିପାକ ଥିବ ଯାକୁ । ଯୋଗ କଢ଼ାଇ ନେବ ତାକୁ ॥
ବିଧି ଯେମନ୍ତେ ଲେଖିଥାଇ । ସେ ଜନ ସେ ଠାବକୁ ଯାଇଁ ॥ ଇତ୍ୟାଦି

ଭକ୍ତିମାଳିକା ପୁସ୍ତକଟି ତେ୯ଟି ଅଧ୍ୟାୟରେ ଶେଷ ହୋଇଛି । ସମୁଦାୟ ପୁସ୍ତକର ପଦ ସଂଖ୍ୟା ପ୍ରାୟ ବାରଶହରୁ ଅଧିକ । ଏ ପୁସ୍ତକଟି କବିଙ୍କର ପରବର୍ତ୍ତୀ ରଚନା ହୋଇଥିବାରୁ, ଏଥିରେ ରଚନାଗତ ବୈଶିଷ୍ଟ୍ୟ ଥିବା ସଙ୍ଗେ ସଙ୍ଗେ ପଦ ରଚନା, ତତ୍ତ୍ୱାର୍ଥ ସଂଯୋଜନାରେ ଚମତ୍କାରିତା ଫୁଟାଇଛନ୍ତି । ଏ' ପୁସ୍ତକରେ କବି ଉଭୟ 'ଦାଣ୍ଡି ବୃତ୍ତି ଓ 'ବଙ୍ଗଳାଶ୍ରୀ'କୁ ବ୍ୟବହାର କରି 'ଭାଗବତବାଣୀ'କୁ ଅଧିକାଂଶ ଅଧ୍ୟାୟର ବୃତ୍ତିରୂପେ ବ୍ୟବହାର କରିଛନ୍ତି । ଏ' ପୁସ୍ତକର ମୁଖ୍ୟ ପ୍ରତିପାଦ୍ୟ ବିଷୟ ଆଗତ ଭବିଷ୍ୟ ବା ମ୍ଲେଚ୍ଛସଂହାର । ସମାଜରେ ବ୍ୟାପିଥିବା ଅନୀତି ଓ ତାର ପ୍ରତିକାର ଲାଗି ପ୍ରଭୁଙ୍କର କଲ୍କୀ ଅବତାର, ଭକ୍ତଗଣଙ୍କ ସହିତ ଲୀଳା ବର୍ଣ୍ଣନାରେ କବି ବାଲିଗାଁ ଦାସ ପୁସ୍ତକଟିକୁ ସମୃଦ୍ଧ କରିଛନ୍ତି ।

କବି ବାଲିଗାଁ ଦାସ 'ଭକ୍ତିମାଳିକା'ର ପ୍ରଥମ ଅଧ୍ୟାୟରୁ ଆରମ୍ଭକରି ବ୍ରହ୍ମଜ୍ଞାନ ବା ତତ୍ତ୍ୱଜ୍ଞାନ ସମ୍ବନ୍ଧୀୟ ଆଲୋଚନା କରିଛନ୍ତି । ସେ ଶ୍ରୀ ଜଗନ୍ନାଥଙ୍କର ଶ୍ରୀପୟରରେ ଧ୍ୟାନକରି ପଞ୍ଚସଖାଙ୍କ ପ୍ରଶ୍ନର ସମ୍ମୁଖୀନ ହେବା ପ୍ରସଙ୍ଗରେ କହୁଛନ୍ତି—

"ଓଁ ସିଦ୍ଧି ମାତା ମୋର ଯେ ଅଣ ମୋର ପିତା,
ଅକ୍ଷରଙ୍କ ଗଣେ ମୁଁ ତୁମ୍ଭଙ୍କୁ କରିଛି ଗଣିତା ॥
ବାୟସ୍ତି ଅକ୍ଷର ଅଟଇ ଏ ପିତା,
ଏକଇ ବାୟସ୍ତି ନିତ୍ୟେ ଜପୁଛି ବିଧାତା ॥
ଦଶଷଟ କ୍ଷର କରି ଭାବୁଅଛ ତୋତେ,
ତେଣୁ ଲକ୍ଷ୍ମୀ ନାରାୟଣ ଅଙ୍ଗଟି ଯୁଗତେ ॥" (ପ୍ରଥମ ଅଧ୍ୟାୟ)

ଶ୍ରୀ ଜଗନ୍ନାଥ ଭକ୍ତ ବାଲିଗାଁ ଦାସଙ୍କୁ ଉପଦେଶ ଦେଇ କହୁଛନ୍ତି—

"ଏକାକ୍ଷର ଲିଖ ବିନ୍ଦୁ ଥିବୁ ହୃଦେ କ୍ଲୀଂ ପଞ୍ଚମାତ୍ରା ତହିଁ,
ଓଁ ଉମ ନିଦ୍ରକାର ମନ୍ତ୍ରର ବିଗ୍ରହ ଅନାହିକୁ ଥିବୁ ଧ୍ୟାୟି ॥
ସେହୀ ଉପାସନା ମନ୍ତ୍ରରେ ଡାକିବୁ ମୋର ନାମ ହେତୁ ଦେଇ ।
× × ×

ତୁହି ବସିଥିବୁ ଶ୍ରୀଂ ଯନ୍ତ୍ର ସ୍ଥାପିଣ ଠିକଣା ତୋତେ କହିଲି ।
ତୋହର ହୃଦରେ ବାରମାସା ଭେଦ ଛଡ଼ ଐର ଦେଖାଇଲି ॥
କ୍ଳୀଂ ହ୍ଳୀଂ ଶ୍ରୀଂ ଓଁ ଏ ଚାରି ଅକ୍ଷର ମନ୍ତ୍ରର ବିଜୟେ ବନାଅବନା ନୁହନ୍ତି ।
ଯେ ଚାରିକି ଯେବେ ଲୟେ କରିଥିବୁ ଛାଡ଼ିବ ସକଳ ଭ୍ରାନ୍ତି ॥"

ତତ୍ପରେ ଶ୍ରୀ ଜଗନ୍ନାଥ ଭକ୍ତ ବାଳିଗାଁଙ୍କର ମନର ଅଭିଳାଷ ଜାଣିପାରି, ପଞ୍ଚସଖାଗଣ ତାଙ୍କୁ କିଏ କ'ଣ ପ୍ରଶ୍ନ ପଚାରିବେ ଏବଂ ତାର ଉତ୍ତର କ'ଣ କ'ଣ ହେବ, ସେ ସମ୍ବନ୍ଧରେ ସୂଚନା ଦେଇଛନ୍ତି । ଶ୍ରୀ ଜଗନ୍ନାଥଙ୍କ ଅନ୍ତରାଳରେ ରହି କବି ଦାସିଆ ନିଜର ତତ୍ତ୍ୱଜ୍ଞାନ ସମ୍ବନ୍ଧୀୟ ବିଚାର, ପାଠକମାନଙ୍କ ଆଗରେ ଉପସ୍ଥାପିତ କରିଛନ୍ତି । କବିଙ୍କର ଶରୀରଭେଦ ସମ୍ପର୍କୀୟ ତତ୍ତ୍ୱ ତଥା ବ୍ରହ୍ମଜ୍ଞାନ ବିଚାର ସମ୍ବନ୍ଧୀୟ ପଦାବଳୀର ଉପସ୍ଥାପନା ତାଙ୍କ ଜ୍ଞାନଗରିମା ବିଷୟରେ ଯଥେଷ୍ଟ ଆଲୋକପାତ କରେ । ଐଶୀଶକ୍ତିସମ୍ପନ୍ନ ନହେଲେ ସାଧାରଣ କବି ଶରୀରତତ୍ତ୍ୱର ସୂକ୍ଷ୍ମବିଚାର ଏତେ ସହଜରେ ଉପସ୍ଥାପନା କରିପାରିବେ ନାହିଁ ।

ଶ୍ରୀଂ ଯନ୍ତ୍ରଗୋଟି ଐମିଠ ଉକାର ଠୂଳ ଶୂନ୍ୟ ଲୟେକର ।
ଶିଶୁ ଅନନ୍ତ ପଚାରିବେ ତୁମ୍ଭଙ୍କୁ ଅନାଦି ସୂର୍ଯ୍ୟ ବିଚାର ॥
ଯଶୋବନ୍ତ ମହାଦେବ ତୋତେ ଶୁଧି ଅଙ୍ଗ ଅଙ୍ଗ ପଚାରିବେ ।
ଦେବତାମାନଙ୍କ ଅଙ୍ଗ କରନ୍ୟାସେ ଉପାସନା ବିଚାରିବେ ॥
ମୋହର କପଟ ଅଙ୍ଗନ୍ୟାସ କରି ଦାଢ଼ିବୁ ତାହାଙ୍କ ଆଗେ ।
ପାଦଠାରୁ କଣ୍ଠ ଯାଏ ବାଣ୍ଟି ନେବୁ ଓଁକାର ଭେଦକୁ ଯେବେ ॥
× × ×
ଚଉରାଶି ମନ୍ତ୍ର ଯନ୍ତ୍ର ହ୍ରଂ କହିଲି ଭେଦ ପାରିଲୁ କି ତୁହି ?
ଯେ ଯନ୍ତ୍ରମାନଟି ଅମୂଲ୍ୟ ଭଣ୍ଡାର ନ କହିବୁ ଆନ କାହିଁ ॥"

'ଭକ୍ତ ମାଳିକା'ର ପ୍ରତ୍ୟେକ ଅଧ୍ୟାୟରେ ବ୍ରହ୍ମଜ୍ଞାନ ସମ୍ପର୍କୀୟ ବିଚାର ପରିପୂର୍ଣ୍ଣ ମାତ୍ରାରେ ରହିଛି । କବି ବାଳିଗା ଦାସ ତତ୍ତ୍ୱଜ୍ଞାନ ସମ୍ବନ୍ଧୀୟ ବହୁ ପ୍ରଶ୍ନ ଗୋଟି ଗୋଟି କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ପଚାରିଛନ୍ତି ଏବଂ ମହାପ୍ରଭୁଙ୍କୁ ଭକ୍ତଙ୍କର ସଂଶୟ ଦୂର କରିବା କାମନାରେ ପ୍ରତ୍ୟେକ ପ୍ରଶ୍ନର ସଠିକ ଉତ୍ତର ଦେଇଛନ୍ତି । ସେହି ପ୍ରସଙ୍ଗରେ କବି ନିଜ ସୂକ୍ଷ୍ମଜ୍ଞାନର ସମ୍ୟକ୍ ପରିଚୟ ଦେବା ସଙ୍ଗେ ସଙ୍ଗେ ଭକ୍ତସୁଲଭ ନମ୍ରତା ପ୍ରକାଶ କରି କହିଛନ୍ତି—

"ବନ୍ଧୁ ବାନ୍ଧବେ ମୋହର କେହି ନାହାନ୍ତି ମୋ ବନ୍ଧୁ ପରମ ବ୍ରହ୍ମ ।
ମାତାପିତା ମୋର ଲକ୍ଷ୍ମୀ ନାରାୟଣ ଗୁରୁ ଜଗନ୍ନାଥ ନାମ ॥
ତାଙ୍କଠାରୁ ନାମ ଦୀକ୍ଷା ମୁଁ ପାଇଲି ସେହିରୂ କରି ମୁହିଁ ତୋତେ ।
ଚତୁର୍ବର୍ଗ ଦାତା ମଞ୍ଚରେ ବିଜୟେ ଆଗେ ମିଳିଲେ ଅଚ୍ୟୁତେ ॥"

କବି ବାଲୁଗାଁ ଚତୁର୍ଥ ଅଧ୍ୟାୟଠାରୁ ଆରମ୍ଭ କରି ପ୍ରାୟ ଶେଷ ଅଧ୍ୟାୟ ପର୍ଯ୍ୟନ୍ତ, ଓଡ଼ିଶାର ବିଭିନ୍ନ ଭକ୍ତ, ସନ୍ଥମାନଙ୍କ ନାମ, ବାସସ୍ଥାନ ତଥା ପିତାମାତାଙ୍କ ନାମ ଆଦି ଉଲ୍ଲେଖ କରିଛନ୍ତି । ସେହି ନାମ ତାଲିକାରେ ଓଡ଼ିଆ ଭକ୍ତିସାହିତ୍ୟ ରଚନାରେ ପ୍ରସିଦ୍ଧି ଅର୍ଜନ କରିଥିବା କେତେଜଣ ସନ୍ଥ କବିଙ୍କ ନାମ ରହିଛି; ତଦ୍‌ବ୍ୟତୀତ ବାଲୁଗାଁ ଦାସ ଶ୍ରୀଚୈତନ୍ୟ ଓ ତାଙ୍କ ଅନୁଗାମୀ କେତେଜଣ ଗୌଡ଼ୀୟ ଭକ୍ତଙ୍କ ନାମ ଓ ପ୍ରସିଦ୍ଧି ସମ୍ପର୍କରେ ସୂଚନା ଦେଇଛନ୍ତି ।

'ଭକ୍ତିମାଳିକା' ଗ୍ରନ୍ଥର ଭାଷା ପାଣ୍ଡିତ୍ୟପୂର୍ଣ୍ଣ, ପଦଯୋଜନା, ଶୈଳୀ କବିତ୍ୱପୂର୍ଣ୍ଣ ତଥା ବ୍ରହ୍ମଜ୍ଞାନର ସମୀକ୍ଷା ନିର୍ଗୁଣପନ୍ଥୀ କବିମାନଙ୍କ ତୁଳନାରେ କୌଣସି ଗୁଣରେ ଊଣା ନୁହେଁ । କବି ପ୍ରସ୍ତୁତ ପୁସ୍ତକରେ ପାଣ୍ଡିତ୍ୟପୂର୍ଣ୍ଣ ସଂସ୍କୃତ ପଦାବଳୀ ପ୍ରଚୁର ମାତ୍ରାରେ ପ୍ରୟୋଗ କରିଛନ୍ତି ଏବଂ ଜଣେ ସୁଦକ୍ଷ କବିଙ୍କ ପରି କବିତ୍ୱ-ପ୍ରତିଭାରେ ପୁସ୍ତକଟିକୁ ସମଳଂକୃତ କରିଛନ୍ତି । କବି ବାଲୁଗାଁ ଦାସ ବା ଦାସିଆଙ୍କ ରଚିତ ଏହି ଦୁଇଟି ପୁସ୍ତକ ବ୍ୟତୀତ ଅନ୍ୟ କୌଣସି ରଚନା ଏପର୍ଯ୍ୟନ୍ତ ମୋର ଦୃଷ୍ଟିକୁ ଆସିନାହିଁ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ପ୍ରାୟ ପଚିଶ ତିରିଶ ହଜାର ପାଣ୍ଡୁଲିପି ସଂଗୃହୀତ ହୋଇ ରହିଥିଲେହେଁ, 'ଆଗତଭବିଷ୍ୟ ବା ବାଲୁଗାଁ ଦାସିଆ ଭାଗବତ' ଓ 'ଭକ୍ତିମାଳିକା' ବ୍ୟତୀତ ଭକ୍ତକବି ଦାସିଆଙ୍କ ନାମରେ ଭଣିତ ଅନ୍ୟ କୌଣସି ରଚନା ମିଳିନାହିଁ; କିନ୍ତୁ ଶତାଧିକ ବର୍ଷ ବଞ୍ଚିଥିବା ଭକ୍ତକବି ବାଲୁଗାଁ ଦାସଙ୍କ ଲେଖନୀରୁ ଆହୁରି କେତେ ଖଣ୍ଡି ପୁସ୍ତକ ତଥା ବହୁ ସଂଖ୍ୟକ ଖଣ୍ଡ କବିତା ଓ ଭଜନ ନିସୃତ ହୋଇଥିବ ସନ୍ଦେହ ନାହିଁ ।

□□□

# ଭକ୍ତ ଦାସିଆ ଓ ବାଲିଗାଁ

ପୁରୀ ଜିଲ୍ଲାର ସାତଶଙ୍ଖ ନିକଟବର୍ତ୍ତୀ ଟେଙ୍ଗିପୁର ମୌଜାର ଅନତିଦୂରରେ ବାଲିଗାଁ ଅବସ୍ଥିତ । ଏହି ଗ୍ରାମର ପୂର୍ବରେ ଶ୍ରୀ ଜଗନ୍ନାଥ ସଡ଼କ । ପଶ୍ଚିମରେ ବିଖ୍ୟାତ ବ୍ରାହ୍ମଣଶାସନ ପ୍ରହରାଜପୁର, ଉତ୍ତରରେ ଆବଲପୁର ଓ ଦକ୍ଷିଣରେ ଖୋର୍ଦ୍ଧା ରୋଡ଼ ପୁରୀ ରେଳପଥ । ପ୍ରସିଦ୍ଧ ଶ୍ରୀକ୍ଷେତ୍ର ପୁରୀଠାରୁ ଏହି ଗ୍ରାମର ଦୂରତା ପ୍ରାୟ ତିରିଶ କିଲୋମିଟର ଏବଂ ଭୁବନେଶ୍ୱରଠାରୁ ବାଲିଗାଁର ଦୂରତା ପ୍ରାୟ ହେତକ । ଏହି ଗ୍ରାମରେ ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀରେ ଭକ୍ତପ୍ରବର ଦାସିଆ ଜନ୍ମଗ୍ରହଣ କରିଥିଲେ । ଭକ୍ତ ଦାସିଆ ତତ୍କାଳୀନ ସମାଜରେ ଜଣେ ସିଦ୍ଧ ସାଧକ ରୂପେ ଖ୍ୟାତି ଅର୍ଜନ କରିଥିବାରୁ, ଲୋକମୁଖରେ ସେ 'ବାଲିଗାଁ ଦାସ' ଭାବରେ ପ୍ରସିଦ୍ଧ ହୋଇଥିଲେ । ସେହି ଗ୍ରାମର ଶାନ୍ତ ତଥା ନିରାଡ଼ମ୍ବର ପରିବେଶରେ ଭକ୍ତ ଦାସିଆ ଗୋଟିଏ ଆଶ୍ରମ ନିର୍ମାଣ କରି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପାଦପଦ୍ମରେ ମନୋନିବେଶ-ପୂର୍ବକ ଭକ୍ତଜୀବନ ଯାପନ କରୁଥିଲେ । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ତାଙ୍କର ଅଚଳା-ଭକ୍ତି ଥିବାରୁ ତାଙ୍କ ସମ୍ବନ୍ଧରେ ଅନ୍ୟାନ୍ୟ ଭକ୍ତଙ୍କ ପରି ଅନେକ କିମ୍ବଦନ୍ତୀ ପ୍ରଚଳିତ ହୋଇଥିଲା ।

ଭକ୍ତ ଦାସିଆ ଯେଉଁଠାରେ ଆଶ୍ରମ ନିର୍ମାଣ କରି ରହିଥିଲେ ତନ୍ନିକଟରେ ଗୋଟିଏ ପୁଷ୍କରିଣୀ ଥିବାର ପ୍ରମାଣ 'ଭକ୍ତମାଳିକା' ପୁସ୍ତକରୁ ଜଣାଯାଏ । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଆଦେଶରେ ଭକ୍ତକବି ବାଲିଗାଁ ଦାସ ପଞ୍ଚସଖା (ଜଗନ୍ନାଥ, ବଳରାମ, ଅଚ୍ୟୁତ, ଯଶୋବନ୍ତ, ଅନନ୍ତ)ଙ୍କୁ ସେହି ପୁଷ୍କରିଣୀର ଜଳମଧ୍ୟରେ ମହାପ୍ରଭୁଙ୍କ ଦଶାବତାର ଦେଖାଇଥିଲେ—

"କାଲି ପ୍ରଭାତରୁ ଦର୍ଶନ କରିବୁ ଭଗତ ଜନ ମୋହର ।
ଅବତାର ମାନ ଜଳେ ଦେଖାଇବୁ ଭାବନା ଚେତ ତୋହର ॥

× × ×

ବାଲିଗାଁ ନାମେ ବଳରାମ ଦାସଙ୍କୁ ଜଳେ ଦଶ ଅବତାର ଦେଖାଇଲେ ।
ବୋଇଲେ ହେ ଦାସେ ପ୍ରଭୁ କାହିଁଛନ୍ତି ଆମ୍ଭେ ଦେଖିନାହୁଁ ଭଲେ ॥

(ଭକ୍ତମାଳିକା—ପ୍ରଥମ ଅଧ୍ୟାୟ ୬୦ ଓ ୬୩ ପଦ)

ବାଲିଗାଁ ମେଲଣ ପଡ଼ିଆ ନିକଟରେ ଅଦ୍ୟାପି ଗୋଟିଏ ପୁଷ୍କରିଣୀ ବିଦ୍ୟମାନ ରହିଛି । ସେହି ପୋଖରୀରେ ଭକ୍ତ ଦାସିଆ ପଞ୍ଚସଖାଙ୍କୁ ଦଶାବତାର ଦେଖାଇଥିବାର କିମ୍ବଦନ୍ତୀ ଶୁଣାଯାଏ । ତଦନୁସାରେ ଅଦ୍ୟାପି ଆଖପାଖ ଅଞ୍ଚଳର ଲୋକମାନେ ସେହି ପୁଷ୍କରିଣୀଟିକୁ

ଗୋଟିଏ ପବିତ୍ର ପୋଖରୀ ବୋଲି ମନେ କରୁଛନ୍ତି ଏବଂ ସେଥିରୁ ମାଛ ଧରିବା କାର୍ଯ୍ୟ କରୁନାହାନ୍ତି । କାରଣ ଭକ୍ତ ଦାସିଆ ବୈଷ୍ଣବ ଥିବାରୁ ସମ୍ପୂର୍ଣ୍ଣ ନିରାମିଷାଶୀ ଥିଲେ । ତେଣୁ ଜନସାଧାରଣଙ୍କର ଧାରଣା ଯେ, ଉକ୍ତ ପୋଖରୀରୁ ମାଛ ଧରି ରାନ୍ଧିଲେ, ତରକାରୀ ରକ୍ତରେ ପରିଣତ ହୋଇଯିବ । ଏହି ଧାରଣାର ବଶବର୍ତ୍ତୀ ହୋଇ ଲୋକମାନେ ଅଦ୍ୟାପି ପୁଷ୍କରିଣୀଟିର ପବିତ୍ରତା ରକ୍ଷାକରି ଆସୁଛନ୍ତି ।

ବର୍ତ୍ତମାନ ବାଲିଗ୍ରାମ ବା ବାଲଗାଁ ମେଲନ ପଡ଼ିଆ ନିକଟରେ ଭକ୍ତ ଦାସିଆଙ୍କର ଗୋଟିଏ 'ସମାଧିପୀଠ' ରହିଛି । ତନ୍ନିକଟରେ ଗୋଟିଏ ଶ୍ରୀ ରାଧାକୃଷ୍ଣ ମନ୍ଦିର ଓ ମଠ ରହିଛି । ଖୁବ୍ ସମ୍ଭବତଃ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ ଶ୍ରୀ ଚୈତନ୍ୟ ଦେବଙ୍କ ପ୍ରବର୍ତ୍ତିତ ଗୌଡ଼ୀୟ ମତବାଦ ଓଡ଼ିଶାରେ ବଳଭଦ୍ର ବିଦ୍ୟାଭୂଷଣ ଓ ରସିକାନନ୍ଦ ଗୋସ୍ୱାମୀଙ୍କଦ୍ୱାରା ସୁପ୍ରତିଷ୍ଠିତ ହେବା ପରେ, ବୈଷ୍ଣବପୀଠ ଦାସିଆଙ୍କ ଜନ୍ମସ୍ଥଳୀ ବାଲଗାଁରେ ଶ୍ରୀ ରାଧାକୃଷ୍ଣଙ୍କ ବିଗ୍ରହ ସ୍ଥାପିତ ହୋଇଛି । ସେଠାକାର ମଠଟି ମଧ୍ୟ ସେହି ସମୟରେ ସ୍ଥାପିତ ହୋଇଥିବା ଅସମ୍ଭବ ନୁହେଁ ।

ଦାସିଆ ଗୃହୀ ବୈଷ୍ଣବ ଥିଲେ ମଧ୍ୟ ତାଙ୍କର ସନ୍ତାନସନ୍ତତି ନଥିଲା କିମ୍ବା ତାଙ୍କ ବଂଶର ଆଉ କେହି ନାହାନ୍ତି; କିନ୍ତୁ ଆଖପାଖ ଗ୍ରାମଗୁଡ଼ିକରେ ତାଙ୍କ ସମ୍ପ୍ରଦାୟର ହଜାର ହଜାର ଲୋକ ବାସ କରୁଛନ୍ତି । ସେମାନେ ନିଜକୁ ବାଲଗାଁ ଦାସଙ୍କର ଶିଷ୍ୟ ବୋଲି ଗର୍ବ ଅନୁଭବ କରୁଛନ୍ତି ।

ବାଲଗାଁ ଦାସ ବା ଦାସିଆ ଥିଲେ ଜାତିରେ ଖଡ଼ାଳ ବା ଖନ୍ଦାଳ । ଲୁଗାବୁଣି ପେଟ ପୋଷିବା ଥିଲା ତାଙ୍କର ଏକମାତ୍ର ଜୀବିକା । 'ଆଗତ ଭବିଷ୍ୟ' ବା ବାଲଗାଁ ଦାସିଆ ଭାଗବତ'ରୁ ଜଣାଯାଏ ଯେ, ଭକ୍ତପ୍ରବର ଦାସିଆ ତନ୍ତରେ ଲୁଗା ବୁଣୁଥିବା ସମୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ବ୍ରାହ୍ମଣ ରୂପରେ ଭକ୍ତର କୁଡ଼ିଆରେ ପହଞ୍ଚି ତାଙ୍କୁ ଖାଇବା ଲାଗି ମାଗିଥିଲେ । ଭକ୍ତ ଦାସିଆ ପ୍ରଭୁଙ୍କର କୃପାରେ ତଲ୍ଲୀନ ହୋଇ ତାଙ୍କୁ 'ବାସ ପଇଡ଼' ପାଣି ପିଆଇଥିଲେ ।

"ଲେଖନ ସଖା ପୋଥି ହସ୍ତେ । ଧୀରେ ଚାଲନ୍ତି ଜଗନ୍ନାଥେ ॥
ବାଲଗାଁ ଦାସ ଘରଠାରେ । ମିଳିଲେ ଆସି ଧାଡ଼ିକାରେ ॥
ଡାକନ୍ତି ବାଲଗାଁ ଦାସକୁ । ଆମ୍ଭେ ଅଇଲୁ ତୋ ପୁରକୁ ॥
× × ×
ବାସ ପଇଡ଼ ଗୋଟିଗୋଟି । କଟାରୀ ଘେନି ବେଗେ କାଟି ॥
ସୁସଙ୍ଗ କରି ଗୋପା ଛେଇ । ପ୍ରଭୁଙ୍କୁ ସମର୍ପିଲେ ନେଇ ॥
× × ×
ଆନନ୍ଦେ କଲେ ତାହା ଗ୍ରାସ । ଭୁକ୍ତି ହୋଇଲେ ମନେ ତୋଷ ॥"

(ଆଗତ ଭବିଷ୍ୟ, ପ୍ରଥମ ଅଧ୍ୟାୟ—୯୯, ୨୦, ୨୧ ଓ ୭୮,୭୯,୭୧)

ଆଜିକାଲି ଦାସିଆଙ୍କ ଶିଷ୍ୟବର୍ଗ ପୂର୍ବପରି ଲୁଗାବୁଣି ଜୀବିକାନିର୍ବାହ କରୁଛନ୍ତି । ସେ ଜାତିକୁ ସରକାରୀ କାଗଜପତ୍ରରେ 'ବୁଣା' ବୋଲି କୁହାଯାଉଛି । କଳଲୁଗାର ପ୍ରଚଳନ ହେତୁ ସେମାନଙ୍କ ମଧ୍ୟରୁ ଅନେକ 'ଲୁଗାବୁଣା' କାର୍ଯ୍ୟ ଛାଡ଼ି ଅନ୍ୟ ଜୀବିକା ଆଦରି ନେଲେଣି । ତଥାପି ଏବେ ପ୍ରାୟ ପ୍ରତ୍ୟେକଙ୍କ ଘରେ ତନ୍ତ, ଅରଟ ଆଦି ସରଞ୍ଜାମ ରହିଛି ।

ଦାସ ବଂଶର ଏହି ଅଧିବାସୀମାନେ ଆଧୁନିକ ଶିକ୍ଷାକ୍ଷେତ୍ରରେ ଖୁବ୍ ବେଶି ଅଗ୍ରଗତି କରିପାରିନାହାନ୍ତି । ଆର୍ଥିକ ସ୍ୱଚ୍ଛଳତା ଦୃଷ୍ଟିରୁ ଏମାନେ ନିତାନ୍ତ ଅନୁନ୍ନତ । ହିନ୍ଦୁ ସମାଜରେ ଏହି ଦାସବଂଶର ଲୋକମାନେ ସବୁଦିନରୁ ଅବହେଳିତ । ବର୍ତ୍ତମାନ ସେମାନେ ସବର୍ଣ୍ଣ କିମ୍ବା ଅସବର୍ଣ୍ଣ କୋଟୀରେ ଗଣା ଯାଉନାହାନ୍ତି । ହରିଜନମାନଙ୍କର ଯେଉଁ ତାଲିକା ସରକାରୀ କାଗଜପତ୍ରରେ ରହିଛି, ସେଥିରେ ଦାସବଂଶୀ ଲୋକଙ୍କ ନାମ ନାହିଁ, ତେଣୁ ସେମାନେ ସବର୍ଣ୍ଣ ଓ ଅସବର୍ଣ୍ଣ ଉଭୟ ଶ୍ରେଣୀରୁ ବଞ୍ଚିତ ।

ଭକ୍ତ ଦାସିଆଙ୍କ ପୀଠ ନିକଟସ୍ଥ ଆବଲପୁର ଗ୍ରାମରେ ପାଞ୍ଚ ସାତଗୋଟି ଦାସ ପରିବାର ଅଛନ୍ତି । ସେଇମାନେ ହିଁ ବର୍ତ୍ତମାନ ଭକ୍ତ ଦାସିଆଙ୍କ 'ସମାଧିପୀଠ'ର ରକ୍ଷଣାବେକ୍ଷଣ କରୁଛନ୍ତି । କେବଳ ଦାସବଂଶର ଲୋକେ ନୁହନ୍ତି, ଆଖପାଖର ଲୋକମାନେ ଭକ୍ତ ଦାସିଆଙ୍କୁ ସନ୍ଥରୂପେ ମାନି ତାଙ୍କ ସ୍ମୃତିରକ୍ଷା ପାଇଁ ଚେଷ୍ଟା କରୁଛନ୍ତି । ଦାସବଂଶର ଲୋକମାନେ ପୁରୁଷାନୁକ୍ରମେ ପ୍ରତିବର୍ଷ କାର୍ତ୍ତିକ ଶୁକ୍ଳ ଏକାଦଶୀରେ ଭକ୍ତ ଦାସିଆଙ୍କ 'ଜୟନ୍ତି' ଏବଂ ମାଘଶୁକ୍ଳ ଏକାଦଶୀରେ ତାଙ୍କର 'ତିରୋଧାନ ଦିବସ' ପାଳନ କରି ଆସୁଅଛନ୍ତି । ଏହି ଜୟନ୍ତି ଦିବସ ଓ ତିରୋଧାନ ଦିବସ କେବଳ ପରମ୍ପରାକ୍ରମେ ପାଳିତ ହୋଇଆସୁଛି; କିନ୍ତୁ 'ଆଗତ ଭବିଷ୍ୟ' କିମ୍ବା 'ଭକ୍ତମାଳିକା' ପୁସ୍ତକରେ ବାଲିଗା ଦାସଙ୍କ ଜନ୍ମ ସମ୍ପର୍କରେ କୌଣସି ସୂଚନା ନାହିଁ ।

ଏ ସମ୍ପର୍କରେ ଏତିକି କୁହାଯାଇପାରେ ଯେ, ପ୍ରାଚୀନ ସନ୍ଥମାନେ ନିଜ ଜନ୍ମ, ବାସସ୍ଥାନ ସମ୍ବନ୍ଧରେ କିଛି ସୂଚନା ଦେଇ ନଥାନ୍ତି । ସେମାନେ ଅପ୍ରତ୍ୟକ୍ଷ ଭାବରେ ନିଜର ବଂଶ ପରିଚୟ, ବାସସ୍ଥାନ ଆଦି ଦେଇଥାଆନ୍ତି । ଏପରି ଦୃଷ୍ଟାନ୍ତ ବହୁ ପ୍ରାଚୀନ କବିଙ୍କ-ଠାରେ ଦେଖାଯାଏ । ସେଇଥିପାଇଁ ଆଜିର ଗବେଷକମାନେ ପ୍ରାଚୀନ କବି, ସନ୍ଥମାନଙ୍କ ସମ୍ବନ୍ଧରେ ଗବେଷଣା କଲାବେଳେ କିମ୍ବଦନ୍ତୀ ତଥା ଅପ୍ରତକ୍ଷ୍ୟ ପ୍ରମାଣ ଉପରେ ବିଶେଷ ଭରସା କରି ଆଲୋଚନା କରିଥାଆନ୍ତି ।

ବର୍ତ୍ତମାନ 'ବାଲଗାଁ ଭକ୍ତଦାସ ସ୍ମୃତିକମିଟି' ନାମରେ ଗୋଟିଏ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ଭକ୍ତ ଦାସିଆଙ୍କ ଜୀବନୀ ଓ ସାହିତ୍ୟ ସମ୍ପର୍କରେ ଆଲୋଚନା କରାଯାଉଛି ଏବଂ ତାଙ୍କ ଜୟନ୍ତି ଓ ତିରୋଧାନ ଦିବସ ଆଡ଼ମ୍ବର ସହକାରେ ପାଳିତ ହେଉଛି ।

'ସ୍ମୃତି କମିଟି' ସମ୍ପାଦକ ଶ୍ରୀଯୁକ୍ତ କେଳୁଚରଣ ଦାସ କହନ୍ତି ଯେ, ଭକ୍ତ ଦାସିଆଙ୍କ ଜୀବନୀ ସମ୍ବଳିତ ପୁସ୍ତକ ଦାସବଂଶର ଜନୈକ ବୃଦ୍ଧ ଶ୍ରୀ ଚନ୍ଦ୍ରାମଣି ଦାସଙ୍କଠାରେ ରହିଛି; କିନ୍ତୁ

ଅତୀତରେ କେହି ଜଣେ ତାଙ୍କଠାରୁ ଖଣ୍ଡିଏ ପୋଥି ମାଗିନେଇ ତାଙ୍କୁ ଫେରାଇ ନଥିବାରୁ ସେ ବର୍ତ୍ତମାନ କୌଣସି ବ୍ୟକ୍ତିଙ୍କୁ ତାଙ୍କଠାରେ ଗଚ୍ଛିତ ଥିବା ପୋଥି ଦେଖାଇବାକୁ ପ୍ରସ୍ତୁତ ନୁହନ୍ତି ।

ଯାହାହେଉ, ଭକ୍ତ ବାଲଗାଁ ଦାସ ପଞ୍ଚସଖା ପରମ୍ପରାର ଜଣେ ସିଦ୍ଧ ସନ୍ଥ ଓ ସାଧକ ଥିଲେ । ସେ ବିଶେଷ କିଛି ପଢ଼ାଶୁଣା କରି ନଥିଲେ ମଧ୍ଯ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଅପାର କରୁଣା ବଳରେ ଅସାଧାରଣ ପ୍ରତିଭାର ଅଧିକାରୀ ହୋଇପାରିଥିଲେ । ତାଙ୍କ ଲେଖାରେ ସାଧାରଣ ଭାଷାର ପ୍ରୟୋଗଠାରୁ ଆରମ୍ଭ କରି, ବାହୁ ସାଧୁଶବ୍ଦ ତଥା ଜ୍ଞାନଗର୍ଭକ ନିର୍ଗୁଣତତ୍ତ୍ୱର ଅନୁଚିନ୍ତା ରହିଛି । ତାଙ୍କ ରଚନା ସମ୍ବନ୍ଧରେ ଅବଗତ ହେବା ନିମିତ୍ତ 'ବାଲଗାଁ ଦାସିଆ ଭାଗବତ'ର ହସ୍ତଲିଖିତ ଅଂଶ ଓ 'ଭକ୍ତ ମାଳିକା'ର ପ୍ରଥମ ଅଧ୍ୟାୟ ଏହି ଆଲୋଚନା ସହିତ ସନ୍ନିବେଶିତ ହୋଇଛି । ଏହା ଫଳରେ ଭକ୍ତ ଦାସିଆଙ୍କ ସାହିତ୍ୟ ସାଧାରଣରେ ଆଲୋଚିତ ହୋଇପାରିବ । □□□

# ବାଲିଗାଁ ଦାସିଆ ଭାଗବତ

ଶ୍ରୀ ବିଘ୍ନରାଜାୟ ନମଃ

ଜୟତୁ ଶ୍ରୀହ୍ଲାଦେବୀ ବର । ବନ୍ଦଇ ନମସ୍ତେ ଶ୍ରୀଧର ।୧।
ବନ୍ଦଇ ଦେବ ନରହରି । କମଳା ଯାର ମନୋହାରୀ ।୨।
ବନ୍ଦଇ ଜୟ ଜଗନ୍ନାଥ । ଶାରଙ୍ଗ ଗଦା ଶଙ୍ଖ ହସ୍ତ ।୩।
ନମଇ ଗଦାପଦ୍ମଧାରୀ । ମଛ କୁରୁମ ରୂପ ଧରି ।୪।
ଶୂକର (୧) ନୃସିଂହ ବାମନ । ପ୍ରଶୁରାମ (୨) ଶ୍ରୀରାମ କାହ୍ନୁ (୩) ।୫।
ବନ୍ଦଇ ନମସ୍ତେ ବଉଦ । ଶ୍ରୀଜଗନ୍ନାଥ ବଳଭଦ୍ର ।୬।
ମଧ୍ୟେ ସୋହାଦ୍ରା ଦେବୀ ଶୋହେ । ଶ୍ୱେତ କୁଙ୍କୁମ ତାର କାୟେ ।୭।
ଅନାଦି (୪) ରୂପେ ଅବତରି । ଲୀଳା ବିକାଶେ ମର୍ତ୍ତ୍ୟପୁରୀ ।୮।
ଭଗତ ଭାବେ ବଶ ହୋନ୍ତି । କୀଟ ପତଙ୍ଗ ହୃଦେ ସ୍ଥିତି ।୯।
ବାଉରି କୁଳେ ହୋଇ ଜନ୍ମ । ବାଲିଗାଁ ଦାସିଆ ତା (୫) ନାମ ।୧୦।

---

(୧) ମୂଳ ପୋଥିରେ 'ଶୁନ୍ଦ ସେ' ରହିଛି । ଏହା ଫଳରେ ପାଠ ସଙ୍ଗତି ହେଉନାହିଁ । କବି ଶ୍ରୀ ନାରାୟଣଙ୍କ ଦଶାବତାର ସ୍ତୁତି କରୁଥିବାବେଳେ 'ଶୂକର' ପାଠ ଏଠାରେ ସମୀଚୀନ ହେବ ।

(୨) 'ପରଶୁରାମ' ଅର୍ଥରେ ପ୍ରୟୋଗ ।

(୩) କାହ୍ନୁ ଶ୍ରୀକୃଷ୍ଣ ଅର୍ଥରେ ବ୍ୟବହୃତ । ଶ୍ରୀକୃଷ୍ଣ ଦଶାବତାର ମଧ୍ୟରେ 'ଗୀତଗୋବିନ୍ଦ'ରେ ନାହିଁ; କିନ୍ତୁ ବଳରାମଙ୍କ ସ୍ଥାନରେ ଶ୍ରୀକୃଷ୍ଣଙ୍କୁ ଅବତାର ରୂପେ 'ଅଭିନବ ଗୀତଗୋବିନ୍ଦ' ଆଦି ପୋଥିରେ ଗ୍ରହଣ କରାଯାଇଛି ।

(୪) ନାକାରୂପେ ପୋଥିପାଠ ।

(୫) ଏଠାରେ 'ବାଲିଗାଁ ଦାସିଆ ତା ନାମ' ବଦଳରେ 'ମୋ ନାମ' ହେବା ସଙ୍ଗତ; କାରଣ ବାଉରିକୁଳରେ ଜାତ ଦାସିଆଙ୍କ ଜନ୍ମ ବାଲିଗାଁରେ ହୋଇଥିଲା । ତେଣୁ ସେ ବାଲିଗାଁ ଦାସ ବା ଦାସିଆ ନାମରେ ପରିଚିତ । ଏଠାରେ ସେ ନିଜେ ଲେଖକ ହୋଇଥିବାରୁ 'ତା ନାମ' ବଦଳରେ 'ମୋ ନାମ' ହେବା ବିଧେୟ ।

ନୀଚ କୁଳରେ ହୋଇ ଜାତ । ବେଳହୁଁ ଅଟନ୍ତି ସେ (୬) ଭୃତ୍ୟ ।୧୧।
ମୋର ନମନ୍ତେ ସଦୁପଡ ।ଅଭାବେ ସରବ ନାଶନ୍ତି (୭) ।୧୨।
ଭକ୍ତ ଯେ ବଳରାମ ଦାସେ (୮) । ସକଳ ଭବଭୟ ନାଶେ ।୧୩।
ଶ୍ରୀଜଗନ୍ନାଥଙ୍କ ଚରଣ । ବାଲିଗାଁ ଦାସିଆ ଶରଣ ।୧୪।
ଶୁଣ ସୁଜନ ଜନମାନେ । ଭକ୍ତକୁ ଯେମନ୍ତେ ଭଗବାନେ ।୧୫।
ଏମନ୍ତେ ଦେବ ନରହର । ଦ୍ୱଦ୍ୟ ବ୍ରାହ୍ମଣ ରୂପ ଧରି ।୧୬।
ପଇତା କନ୍ଧେ ତ ଲୋଟଇ । ଚରଣେ ଅପୂର୍ବ ପାଣ୍ଡୋଇ (୯) ।୧୭।
ପାଞ୍ଝି (୧୦) ପିନ୍ଧଣ ଦେବରାଜେ (୧୧) । ଶାରଙ୍ଗ ଶଙ୍ଖ ଚକ୍ର ସାଜେ ।୧୮।
ଲେଖନ ସଞ୍ଚା (୧୨) ପୋଥିହସ୍ତେ । ଧୀରେ ଚାଲନ୍ତି ଜଗନ୍ନାଥେ ।୧୯।
ବାଲିଗାଁ ଦାସ ଘରଠାରେ । ମିଳିଲେ ଆସି ଧାଉଁକାରେ (୧୩) ।୨୦।
ଡାକନ୍ତି ବାଲିଗାଁ ଦାସକୁ । ଆମ୍ଭେ ଅଇଲୁ (୧୪) ତୋ ପୁରକୁ ।୨୧।
ବହନ ଉଠିଆସେ ଦାସେ । ଡାକ ଫୁଟିଲେ (୧୫) ଶୀତବାସେ ।୨୨।
ତନ୍ତି (୧୬) ଯେ ଠୁକୁ ଠୁକୁ ହୋଇ । ପ୍ରଭୁଙ୍କ ଡାକ ନ ଶୁଭଇ ।୨୩।

---

(୬) ଏଠାରେ ମଧ୍ୟ 'ବେଳହୁଁ ଅଟନ୍ତି ସେ ଭୃତ୍ୟ' ସ୍ଥାନରେ, 'ବେଳହୁଁ ଅଟଇ ମୁଁ ଭୃତ୍ୟ' ହେବା ସମୀଚୀନ । କବି ଜନ୍ମମୂର୍ଖ ଥିବାର କମ୍ବଦନ୍ତୀ ରହିଛି, ତେଣୁ ଏ ପ୍ରକାର ପ୍ରମାଦ ଅସ୍ୱାଭାବିକ ନୁହେଁ ।

(୭) 'ଅଭାବେ ସରବ ନାଶନ୍ତି' ପଦଟି ଏଠାରେ ଅସମୀଚୀନ ବୋଲି ମନେହୁଏ ।

(୮) କବି ଦାସିଆ ବଳରାମ ଦାସଙ୍କ ନାମ ଉଲ୍ଲେଖ କରିଥିବାର ଜଣାଯାଏ, ଭକ୍ତକବି ବଳରାମଙ୍କ ଖ୍ୟାତି ସେ ଶୁଣିଥିଲେ ।

(୯) ପାଣ୍ଡୋଇ—ଯୋତା । (୧୦) 'ପାଞ୍ଝି' ଗାମୁଛା ଅର୍ଥରେ ବ୍ୟବହୃତ ।

(୧୧) ଦେବରାଜ୍ୟ ପୋଥିପାଠ, ପରପାଦରେ 'ସାଜେ' ଥିବାରୁ ପୂର୍ବ ପାଦର ଅନ୍ତ୍ୟ ଦୁଇଅକ୍ଷର 'ରାଜେ' ପାଠ ହେବା ସମୀଚୀନ ।

(୧୨) ସାଞ୍ଚ ପୋଥିପାଠ, କିନ୍ତୁ ଲେଖିବା ପୂର୍ବରୁ ତାଳପତ୍ରକୁ କାଟି ଶୁଖାଇ ପ୍ରସ୍ତୁତ କରାଯାଇଥିବା ଖେଦାକୁ 'ସଞ୍ଚା' କୁହାଯାଏ ।

(୧୩) ଧାଉଁକାରେ—ଶୀଘ୍ର ।

(୧୪) ଅଇଲୁ ଅର୍ଥାତ୍ ଆସିଲୁ ସ୍ଥାନରେ 'ଅଇଲୁ'; ଅର୍ଥାତ୍ ଆସିଲୁ ଅର୍ଥରେ କବି ବ୍ୟବହାର କରିଛନ୍ତି ।

(୧୫) ଫୁଟିଲେ—ଡାକ ଡାକ ଥକପଡ଼ିଲେ ।

(୧୬) ଓଡ଼ିଶାର ଉତ୍ତରାଞ୍ଚଳରେ ତନ୍ତୀ ନାମକ ସ୍ୱତନ୍ତ୍ର ଜାତି ଲୁଗା ବୁଣନ୍ତି; କିନ୍ତୁ ଦକ୍ଷିଣାଞ୍ଚଳରେ ବାଉରିମାନେ ଲୁଗା ବୁଣିବାକୁ ଜୀବିକା ରୂପେ ଗ୍ରହଣ କରିଥା'ନ୍ତି ।

| | | |
|---|---|---|
| ପ୍ରଭୁ ଡାକନ୍ତି ଡାକ ଗୃହ | । ଦୁଆରବନ୍ଧ ଗୃଳ ଧର | ।୨୪। |
| ବାଲଗାଁ ଦାସ ଲୁଗା ବୁଣି | । ଲୁଣ୍ଡୀ (୧୭) କାଢ଼ଇ ଦାସିଆଣୀ | ।୨୫। |
| ଅନାଇ ଦେଲେ ଧାଡକାରେ | । ନଳ(୧୮)ଥୋଇଲେ ଧାଡକାରେ | ।୨୬। |
| ବହନ ହୋଇ ତନ୍ତୁ ଉଠି | । ପ୍ରଭୁଙ୍କୁ ଗୃହାନ୍ତି ଲେଉଟି | ।୨୭। |
| ଦେଖିଲେ ବ୍ରାହ୍ମଣ ଦୁଆର | । ଓଲଗି (୧୯)କରି ଯୋଡ଼େ କର | ।୨୮। |
| କାହିଁକି ଡାକଲ ଗୋସାଇଁ | । କି କଥା କହିଲ ତ ନାହିଁ | ।୨୯। |
| ବୁଣା ତ ହୋଇଲା ପଡ଼ୁଆ (୨୦) | । ଆମ୍ଭ ଦୁଆରେ ହେଲ ଠିଆ | ।୩୦। |
| କି କାର୍ଯ୍ୟେ ଅଇଲ ଏଠାକୁ | । ଅନାଇଦେଲା ଶ୍ରୀ ଅଙ୍ଗକୁ | ।୩୧। |
| ଶଙ୍ଖ ଯେ ଚକ୍ର ଗଦା ଚହ୍ନ | । ଧ୍ୱଜ (୨୧) ଅଙ୍କୁଶ ଚକ୍ର ଚହ୍ନ | ।୩୨। |
| ଶ୍ରୀବତ୍ସ ଚହ୍ନ ହୃଦୟରେ | । ଦାଣେ ଦେଖିଲେ ନୟନରେ | ।୩୩। |
| କୋଟିଏ କୋଟି ଦଣ୍ଡବତ | । ପ୍ରଣାମ କରି ଭୂମିଗତ | ।୩୪। |
| ପ୍ରଭୁ ବୋଲନ୍ତି ଉଠ ଦାସେ | । ଆମ୍ଭେ ଅଇଲୁ ତୁମ୍ଭ ପାଶେ(୨୨) | ।୩୫। |
| ତୁମ୍ଭଙ୍କୁ ଦେଖିବାର ପାଇଁ | । ତେଣୁ ଅଇଲୁ ଆମ୍ଭେ ଧାଇଁ | ।୩୬। |
| ଉଠିଣ ଦାସ (୨୩) ବୋଲେ ବାଣୀ | । ମୋ ଭୁରି ହୀନ ପାପୀ ପୁଣି | ।୩୭। |
| କାଢରେ ଅଟଇ ବାଉରି | । ମୋଠାକୁ କମ୍ପା ବଜେ କରି | ।୩୮। |
| ଲୁଗା ବୁଣିଲେ ପେଟ ପୋଷି | । ଗେଣ୍ଡା କୋଚଆ ଜୀବ ନାଶି | ।୩୯। |
| ମାଛ ଯେ ବେଙ୍ଗ ଖାଉ ମାରି | । ଅନେକ ପାପ ଅଛୁ କରି | ।୪୦। |
| ବାଉରି ଘରଠାରୁ ପୁଣି | । ବିଜୟ କଲ ଚକ୍ରପାଣି | ।୪୧। |

---

(୧୭) ଲୁଣ୍ଡୀ ବାହାର କରିବା—ସୂତା ମାପି ଯୋଗାଇ ଦେବା ।

(୧୮) ନଳି—ଲୁଗା ବୁଣିବା ଲାଗି ତନ୍ତରେ ବ୍ୟବହୃତ ନଳ ।

(୧୯) 'ଓଲେଖ' ପୋଥିପାଠ; କିନ୍ତୁ ଓଲଗ—ଅର୍ଥାତ୍ ପ୍ରଣାମ ଅର୍ଥ ହେବା ସମୀଚୀନ । ଅଦ୍ୟାପି ସାଧାରଣ ଲୋକେ ନମସ୍କାର ଅର୍ଥରେ 'ଓଲଗି', 'ପାଲଗି' ଆଦି ଶବ୍ଦ ବ୍ୟବହାର କରନ୍ତି ।

(୨୦) ପଡ଼ୁଆ=କାମ ନ ହେବା । (୨୧) ଦ୍ୱିଜ ପୋଥିପାଠ ।

(୨୨) ଦାସିଆର ଅଭୀଷ୍ଟ ପୂରଣ ଲାଗି ପ୍ରଭୁ ଶ୍ରୀଜଗନ୍ନାଥ ସ୍ୱପ୍ନରେ ପ୍ରତିଶ୍ରୁତି ଦେଇଥିବାର କିମ୍ବଦନ୍ତୀ ଭକ୍ତ ରାମଦାସଙ୍କ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ଉଲ୍ଲେଖ ରହିଛି । ତେଣୁ ଭକ୍ତର ଅର୍ଦ୍ଦନେ ଭକ୍ତବତ୍ସଳ ଜଗନ୍ନାଥ ଦାସିଆ ଗୃହକୁ ବ୍ରାହ୍ମଣରୂପରେ ଆସିବା ପୌରାଣିକ ଦୃଷ୍ଟିକୋଣରୁ ଅସଙ୍ଗତ ନୁହେଁ ।

(୨୩) ଦାସେ ପୋଥି ପାଠ ।

ବାଲିଗାଁ ଦାସିଆ ବଚନ । ଶୁଣିଲେ ଦେବ ଭଗବାନ ।୪୨।
ପ୍ରଭୁ ବୋଇଲେ ଶୁଣ ଦାସ (୨୪) । ଆମ୍ଭେ ଭଗତ ଭାବେ ବଶ ।୪୩।
ହାଡ଼ି ଚଣ୍ଡାଳ କର୍ମା ନୋହୁ । ମୋ ନାମେ ଯେହୁ ବଶ ହୋଇ ।୪୪।
ତୁମ୍ଭେ ତ ବୋଇଲ ବାଉରି । ବାଆ (୨୫)ଯେ ସର୍ବଘଟେ ପୂରି ।୪୫।
ବାଆ ସକଳେ ଘଟେ ରହି । ପବନ ଯେଣୁ ସିନା ଦେହି ।୪୬।
ପବନ ଥିବାଯାଏ ଥିବ । ପବନ ଗଲେ ଜୀବ ଯିବ ।୪୭।
ପବନ ବହଇ ଦ୍ୱାଦଶ (୨୬) । ନାଭିକମଳେ ତା'ର ବାସ ।୪୮।
କର୍ମାଇ ବୋଇଲ ବାଉରି । ଏ କଥା କହୁନ ବିସ୍ତରି ।୪୯।
ଆମ୍ଭେ 'ଯେ ଜାତିରେ ବ୍ରାହ୍ମଣ । ବାଉରିଠାରେ ହେଲୁ ଜନ୍ମ(୨୭) ।୫୦।
ଏମନ୍ତ ବୋଲି ଦେବରାଜେ (୨୮) । ବାଲିଗାଁ ଦାସଘରେ ବଜେ (୨୯) ।୫୧।
ଦାସକୁ ବୋଲେ ଚକ୍ରଧର । ଟିକିଏ ବୁଝିବୁ ଏଥର ।୫୨।

---

(୨୪) 'ଦାସେ' ପୋଥିପାଠ; କିନ୍ତୁ ପରପାଦରେ 'ବଶ' ସହିତ ଯତିପାତ ଲାଗି 'ଦାସ' ହେବ ।

(୨୫) କବି ଏଠାରେ ନିଜ ଜାତିର ମହତ୍ତ୍ୱ ପ୍ରଖ୍ୟାପନ ଲାଗି ବାଆ ଅର୍ଥାତ୍ ପବନ ଅର୍ଥରେ ବାଉରି ଶବ୍ଦର ଉତ୍ପତ୍ତି ବୋଲି ବର୍ଣ୍ଣନା କରିଛନ୍ତି । ବାଆ + ଉରି ଅର୍ଥାତ୍ ପବନପୂର୍ଣ୍ଣ । ସର୍ବଘଟରେ ପବନ ପୂର୍ଣ୍ଣମାତ୍ରାରେ ରହିଛି ଏବଂ ପବନ ବିନା ସର୍ବକ ଅଚଳ । ତେଣୁ ବାଉରି ହୀନଜାତି ବୋଲି ଶ୍ରୀମୁଖବଚନର ଅନ୍ତରାଳରେ କବି ନିଜେ ସ୍ୱଜାତିର ମର୍ଯ୍ୟାଦା ପ୍ରଖ୍ୟାପନ କରିଛନ୍ତି ।

(୨୬) ଅଣଚାଶ ପବନ ଥିବାର ବର୍ଣ୍ଣନା ମିଳେ; କିନ୍ତୁ କବି ଏଠାରେ ଦ୍ୱାଦଶ ପବନ ପ୍ରୟୋଗ କରିଥିବାର କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ, ଶରୀରମଧ୍ୟସ୍ଥ ଯୋଗସମ୍ମତ ଦ୍ୱାଦଶ ଚକ୍ରରେ ଦ୍ୱାଦଶ ପବନର ଗତାଗତକୁ କବି ଏଠାରେ ଦ୍ୱାଦଶ ପବନ ବୋଲି କହିଛନ୍ତି । ଯୋଗୀମାନେ ସେ ନାଭିକମଳରେ ପବନକୁ ପ୍ରଣାୟାମ ମାଧ୍ୟମରେ ଠୁଳକରି ଯୋଗସାଧନରେ ବ୍ରତୀହୋଇଥାନ୍ତି ।

(୨୭) 'ଜନ୍ମ' ଶବ୍ଦ ପାଦ ପୂରଣ ଲାଗି ସମୀଚୀନ ହୋଇଥିଲେ ହେଁ ଅର୍ଥସଙ୍ଗତି ଦୃଷ୍ଟିରୁ ନିତାନ୍ତ ଅସଙ୍ଗତ ବୋଲି ମନେହୁଏ । ଏଠାରେ 'ବାଉରିଠାରେ ହେଲୁ ମଗ୍ନ' ହେବା ସମୀଚୀନ ।

(୨୮) 'ଦେବରାୟେ'—ପୋଥିପାଠ ।

(୨୯) 'ବିଜୟେ'—ପୋଥିପାଠ; କିନ୍ତୁ 'ବିଜୟେ' ପାଠ ଫଳରେ ଛନ୍ଦ ଭଙ୍ଗ ହେଉଛି । ବିଜୟେ ପାଠ ରଖାଗଲେ ନବାକ୍ଷରୀ ପାଦଟି ଦଶ ଅକ୍ଷର ଯୁକ୍ତ ହେବ ।

ଶୁଣି ବାଲଗାଁ (୩୦) ଦାସେ ଗଲେ । ନଡ଼ା ବିଡ଼ାଏ (୩୧) ପାଶଦେଲେ ।୫୩।
ଲୁଗା ଯେ ବସ୍ତ୍ର(୩୨) ଛନ୍ଦି ପର । ବିଛାଇ ଦେଲେ ତତପର ।୫୪।
ପ୍ରଭୁ ଯେ ବିଜେ କଲେ ଯାଇ । ଶ୍ରୀମୁଖେ ହସହସ ହୋଇ ।୫୫।
ବାଣୀ(୩୩)ବୋଲନ୍ତି ଦାସେ ଶୁଣ । କଥାଏ କହିବାକ ପୁଣ ।୫୬।
ବେଗେ ଅଇଲୁ ଆମ୍ଭେ ଏଥେ । ତୁମ୍ଭଙ୍କୁ ଦେଖିବା ନିମନ୍ତେ ।୫୭।
ଚାଲି ଅଇଲୁ ଖରବେଳେ । ଭୋକ ଲାଗୁଛି ଅବହେଳେ (୩୪) ।୫୮।
କି କି ଉଛୁଣ (୩୫) କରିଥିଲ । ଆମ୍ଭ ପାଇଁ କି ନ ରଖିଲ ।୫୯।
ଶୁଣି ହସନ୍ତି (୩୬) ଦାସେ ମନେ । ବୋଲନ୍ତି ସ୍ପେତ ଭଗବାନେ(୩୭) ।୬୦।
ବୋଲଇ ବାଲଗାଁ ଦାସିଆ । ହେ ପ୍ରଭୁ ତୁମ୍ଭେ ତ ହଟିଆ (୩୮) ।୬୧।
ବାଉରି ଘରେ କି ଭୋଜନ । ବିଟାଳ(୩୯) କରି ଯେ ବ୍ରାହ୍ମଣ ।୬୨।
ବାଉରି ଘରେ ଯେ ଖାଇବ । ଜାତିରେ ବିଟାଳ (୪୦) ହୋଇବ ।୬୩।
ହସି ବୋଲନ୍ତି ଯଦୁସାଇଁ । ଆମ୍ଭର ଜାତି ଗୋତ୍ର ନାହିଁ ।୬୪।
ଯାହାର ଭାବ ପାଉ ମନ (୪୧) । ତା' ଘରେ ଆମ୍ଭର ଭୋଜନ ।୬୫।
ଅଭାବ (୪୨) କରେ ଯେ ଆମ୍ଭଙ୍କୁ । ଚିତ୍ତ ନ ଘଟେ (୪୩)ତାହାଠାକୁ ।୬୬।

---

(୩୦) 'ବାଙ୍ଗାଦାସ' ପୋଥିପାଠ । (୩୧) 'ବିଡ଼ିଏ' ପୋଥିପାଠ ।

(୩୨) ବସ୍ତ୍ର ପୋଥିପାଠ । ଏଠାରେ 'ଲୁଗା' ଓ 'ବସ୍ତ୍ର' ଦୁଇଟିଯାକ ଏକାର୍ଥବାଚୀ ଶବ୍ଦ ହେବାର କିଛି ତାତ୍ପର୍ଯ୍ୟ ଥିବାର ମନେ ହୁଏନାହିଁ ।

(୩୩) 'ବାଣୀ ବୋଲନ୍ତି' ସ୍ଥାନରେ 'ପ୍ରଭୁ ବୋଲନ୍ତି' ପାଠ ହେବା ସମୀଚୀନ ।

(୩୪) ଅବହେଳେ—ଅସମୟରେ, ଅର୍ଥାତ୍ ଚାଲି ଚାଲି ଆସିଥିବାରୁ ଅସମୟରେ ଭୋକ ଲାଗିବା ଅସମ୍ଭବ ନୁହେଁ ।

(୩୫) ଉଛୁଣ—ତରକାରି, ଉଅଣ, ତୁଣ, ଉରଣ, ଉରଣ ଆଦି ଶବ୍ଦ ତରକାରି ଅର୍ଥରେ ବ୍ୟବହୃତ ହେଉଛି । (୩୬) ହସିଲେ—ପୋଥିପାଠ ।

(୩୭) ଏଠାରେ 'ମନେ' ଶବ୍ଦ ସହିତ ଯତିପାତ ନିମିତ୍ତ 'ଭଗବାନେ' ପ୍ରୟୋଗ କରାଯାଇଛି । ତଦ୍‌ବ୍ୟତୀତ ମାନ୍ୟାର୍ଥେ ବହୁବଚନର ପ୍ରୟୋଗ ବୋଲି ମଧ୍ୟ କୁହାଯାଇପାରେ । (୩୮) ହଟିଆ—ଜିଦ୍‌ଖୋର ।

(୩୯) ବିଟାଳ—ଅସ୍ପୃଷ୍ଟ କରିବା (ସ୍ନେହ ଅର୍ଥରେ) ।

(୪୦) ବିଟାଳ—ଏଠାରେ ଅଛକହେବା ବା ଅଜାତିହେବା ଅର୍ଥରେ ବ୍ୟବହୃତ ।

(୪୧) 'ଭାବ ପାଉ ମନ' ଅର୍ଥାତ୍ 'ଶ୍ରଦ୍ଧାଭାବ ଦେଖୁ' ଏହି ଅର୍ଥରେ ପ୍ରୟୋଗ କରାଯାଇଛି ।

(୪୨) ଅଭାବ, ଏ ଅଶ୍ରଦ୍ଧା ଅର୍ଥରେ ପ୍ରୟୋଗ ହୋଇଛି ।

(୪୩) 'ଚିତ୍ତ ନ ଘଟେ' ମନ ବୁଝେନାହିଁ ଅର୍ଥରେ ବ୍ୟବହୃତ ।

ପ୍ରଭୁଙ୍କ ବଚନେ ଦାସିଆ । ଆନନ୍ଦେ ହୋଇ ଠିଆ ଠିଆ(୪୪) ।୬୭।
କଣ୍ଟାରି ହସ୍ତରେ ଘେନଲେ । ନଡ଼ିଆ ଗଛରେ ଉଠିଲେ ।୬୮।
ବାସ-ପଇଡ଼(୪୫) ଗୁଣିଗୋଟି । କଣ୍ଟାରି ଘେନ ବେଗେ କାଟି ।୬୯।
ସୁସଞ୍ଚ(୪୬)କରି ଟ୍ରେପା ଛେଇ(୪୭)। ପ୍ରଭୁଙ୍କୁ ସମର୍ପିଲେ ନେଇ ।୭୦।
ସମର୍ପି ପ୍ରଭୁଙ୍କ ସମ୍ମୁଖରେ । ଅନ୍ତର ହୋଇ ରହେ ଦୂରେ(୪୮) ।୭୧।
ଆନନ୍ଦେ କଲେ ତାହା ଗ୍ରାସ । ଭୁକ୍ତି ହୋଇଲେ ମନେ ତୋଷ ।୭୨।
ଶୀତଳ ଜଳ ଘେନ ମୁଖ । ପଖାଳି(୪୯) ମନେ ମହାସୁଖ ।୭୩।
ଆନନ୍ଦେ ବସିଲେ ଆସନ । ଦାସଙ୍କୁ ବୋଲନ୍ତି ବଚନ ।୭୪।
ପ୍ରଭୁ ବୋଇଲେ ଆହେ ଦାସ । ମନ ହୋଇଲା ଆମ୍ଭ ତୋଷ ।୭୫।
ହୋଇଲେ (୫୦) କୃତକୃତ୍ୟ ଦାସ । ଶୁଣି ସଂସାରେ ହେବେ ତୋଷ ।୭୬।
ତୁମ୍ଭ ବଚନେ ଅସି ଯେଥି । ଆଗତ ହେଲି ହାତ ପାତି (୫୧) ।୭୭।
ତୁମ୍ଭେ ତ ଅଟ ଆମ୍ଭ ଭକ୍ତ । କୁଳ ଉଚ୍ଛବ (୫୨) ଅର୍ଥେ ଜାତ ।୭୮।
ବୁଣା କୁଳକୁ ନ ମାନଲେ । ଅନର୍ଥ୍ୟ ବଚନ ବୋଇଲେ(୫୩) ।୭୯।
ସମସ୍ତେ ବୋଇଲେ ବାଉରି । ଏ କଳିଯୁଗେ ହରିଣିରୀ ।୮୦।

---

(୪୪) ଠିଆ ଠିଆ; ଯିବ କି ନ ଯିବ, ଏପରି ଏକ ଦୋଦୁଲ୍ୟମାନ ଅବସ୍ଥା ।

(୪୫) ବାସ ପଇଡ଼—ନଡ଼ିଆ ଗଛ ମଧ୍ୟରେ ଗୋଟିଏ ଗୋଟିଏ ପଇଡ଼ର ପାଣି କର୍ପୂର ପରି ବାସେ । ଓଡ଼ିଶାରେ 'ଗଙ୍ଗବାଣ ପଇଡ଼', 'କର୍ପୂରି ପଇଡ଼' ଇତ୍ୟାଦି ନାମରେ ପଇଡ଼ ଥିବାର ଦେଖାଯାଏ ।

(୪୬) ସୁସଞ୍ଚ—ଭଲ ଭାବରେ । (୪୭) ଛେଇ—ଟ୍ରେପା ବାହାର କରି ।

(୪୮) ପ୍ରଭୁଙ୍କୁ ନୈବେଦ୍ୟ ଅର୍ପଣ କରି ବାହାରକୁ ଚାଲିଯିବାର ନୀତି ଅଦ୍ୟାପି ମନ୍ଦିରରେ ଅନୁସୃତ ହୁଏ । (୪୯) ପଖାଳି—ଧୋଇ ।

(୫୦) 'ଦାସେ ହୋଇଲେ କୃତ କୃତ' ପୋଥିପାଠ; କିନ୍ତୁ ପର ପାଦରେ 'ତୋଷ' ଥିବାରୁ ଯତିପାତ ଦୃଷ୍ଟିରୁ 'ଦାସେ' ସ୍ଥାନରେ ଦାସ କରି ଶେଷ ଦୁଇ ଅକ୍ଷର ରୂପେ ରଖାଯାଇଛି ।

(୫୧) 'ଆଗତ ହୋଇଲି ହତ ପାଥି' ପୋଥିପାଠ; କିନ୍ତୁ ଏଠାରେ ଏପରି ପାଦ ଦ୍ୱାରା କୌଣସି ଅର୍ଥ ହେଉନାହିଁ । ପ୍ରଭୁ ଆପଣାଛୁଏଁ ଆସି ଭକ୍ତ ଗୃହରେ ମାଗି ଖାଇ-ଥିବାରୁ ଏଠାରେ 'ଆଗତ ହେଲି ହାତପାତି' ହେବା ସମୀଚୀନ ।

(୫୨) କୁଳଉଚ୍ଛବ ଅର୍ଥାତ୍ ଜାତିକୁଳର ମହତ୍ତ୍ୱ ବା ଗୌରବ ଅର୍ଥରେ ବ୍ୟବହୃତ ।

(୫୩) ବୁଣାଳମାନେ ନିଜ କୁଳର ବିରୁଦ୍ଧାଚରଣ କରି ଅନୀତି କରନ୍ତେ, ଜନସାଧାରଣଙ୍କ ଠାରେ ସେମାନେ ବାଉରି ନାମରେ ନାମିତ ହେଲେ ଏବଂ ସମସ୍ତେ ବାଉରିମାନଙ୍କୁ ଘୃଣା କଲେ—ଏହାହିଁ ୭୮ ଓ ୭୯ ପଦର ସାରାର୍ଥ ।

ବାଲ୍ଲଁଗା ଦାସିଆ ଯେ ନାମ । ଏ କୁଳେ କର୍ମା କଲି ଜନ୍ମ ।୮୧।
ଏଠାକୁ ପ୍ରକାଶିବ ନାମ । ତୁମ୍ଭେ ହୋଇବ ତନ ଜନ୍ମ ।୮୨।
ଭଣ୍ଡ୍ରୁ ଗରବ ନାମ ବହି । କଳି-ଯୁଗରେ ଜନ୍ମ ହୋଇ ।୮୩।
ଏବେ ଆମ୍ଭର ପାଶେ ଥାଅ । ବାସନା ଯେଣ ଜନ୍ମ ହୁଅ ।୮୪।
ଯେ ଯାହା ବେଳେ ଜନ୍ମ ହୋଇ । ବାସନା ଉଦେ ହେବ ଯାଇ(୫୪)।୮୫।
ତେର(୫୫) ଭଗତ ତୁମ୍ଭେ ମୋର । ଅଶ୍ୱ ଚଢ଼ିଣ(୫୬) ସଙ୍ଗତର ।୮୬।
ଚଉଦ(୫୭) ଅଙ୍କ ଠାରେ ଯାଇ । ଗରବ ନାମେ ଉଦେ ହୋଇ ।୮୭।
ବିଷ୍ଣୁ ଯେ ଦାସ ହେବେ ତାତ । ନାମ ଲଳିତା ହେବେ ମାତ ।୮୮।
ଏହୁ ପ୍ରକାରେ ଦେବଗଣ । ଚଉଦେ(୫୮) ପ୍ରକାଶ ହୋଇଣ ।୮୯।
ତୁମ୍ଭଙ୍କୁ ସଙ୍ଗତରେ ଘେନ । ନକ୍ଷେତ୍ରି(୫୯) ସାଧିବୁ ମେଦନୀ ।୯୦।
ଶୁଣି ବାଲଗଁା ଦାସ ହସି । କୁଶଳ କହନ୍ତି ବିଶ୍ୱାସି ।୯୧।
କହନ୍ତି ମଧୁର ବଚନ । ହେ ପ୍ରଭୁ ଶୁଣ ଭଗବାନ ।୯୨।
ତୁମ୍ଭେ ତ କହିଲ ଏମନ୍ତ । ଲୋକେ କରିବେଟି କି ସତ ।୯୩।
ଆଗତ କରି କହୁ ବାଣୀ । ପତ୍ରେ ଲେଖିବ ଯଦୁମଣି ।୯୪।
ଏଠାରୁ ହେବ କେତେ କୃତ୍ୟ । ଲେଖିବ ପ୍ରଭୁ ଜଗନ୍ନାଥ ।୯୫।
ଏଣିକ ହେବେ(୬୦) କେତେ ରାଜା । ବିଷ୍ଣୁ ବୈଷ୍ଣବ କରି ପୂଜା ।୯୬।
କେ ରାଜା ହେବ ଚଉଦର । କେତେ ଦାନରେ କଳି ଘୋର ।୯୭।

---

(୫୪) ପୂର୍ବଜନ୍ମର ବାସନାବଳରେ ମଣିଷ ଉଚ୍ଚ ବା ନୀଚ କୁଳରେ ଜାତ ହୋଇଥାଏ । ଇହଜନ୍ମର ପୁଣ୍ୟ ଫଳରେ ପ୍ରଭୁଙ୍କ ଆଶୀର୍ବାଦ ଲାଭ କରାଯାଇପାରେ ।

(୫୫) ତେର ଭଗତ—ତ୍ରୟୋଦଶ ଭକ୍ତ ଅର୍ଥରେ ବ୍ୟବହୃତ । ବିଷ୍ଣୁଙ୍କର ଅନ୍ୟ ଦ୍ୱାଦଶ ଭକ୍ତ କିଏ କିଏ ତାହା ଏଥିରୁ ସ୍ପଷ୍ଟ ହୁଏନାହିଁ ।

(୫୬) ଅଶ୍ୱଚର୍ବଣ—ପୋଥିପାଠ । (୫୭) ବଉଦେ—ପୋଥିପାଠ ।

(୫୮) ଏଠାରେ 'ଚଉଦ' ଅର୍ଥ ଖୋଇବଂଶର ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କର ଚଉଦଅଙ୍କ ଅର୍ଥରେ ବ୍ୟବହୃତ ।

(୫୯) ନକ୍ଷେତ୍ରେ—ପୋଥିପାଠ, କିନ୍ତୁ ନକ୍ଷେତ୍ରି ଅର୍ଥାତ୍ ମହୀରୁ କ୍ଷତ୍ରିୟଶୂନ୍ୟ କରିବୁ, ଅର୍ଥାତ୍ ଦୁର୍ଦ୍ଦାନ୍ତ ଯୋଦ୍ଧାଙ୍କୁ ନାଶ କରିବୁ ବୋଲି ପ୍ରଭୁ କହୁଛନ୍ତି ।

(୬୦) ହେବ—ପୋଥିପାଠ । (୬୧) ସାଞ୍ଚ—ପୋଥିପାଠ ।

(୬୨) O. L./413 ରାଜ୍ୟ ସଂଗ୍ରହାଳୟ ପୋଥିରେ ଏହିଠାରେ ଅଧ୍ୟାୟ ଶେଷ ହୋଇଛି ।

ଚଉଦପଠାରୁ ଯେ ତେଣିକ । କେ ରାଜା ହୋଇବ ଏଣିକ ।୯୮।
ବାଲ୍ଗାଁ ଦାସେ କହି ଏତେ । ବୁଣି ବସିଲେ ଯାଇ ତନ୍ତେ ।୯୯।
ଲେଖନ ସଞ୍ଚା (୭୧) କରେ ଧରି । ଆଗତ ଲେଖନ୍ତି ଶ୍ରୀହରି ।୧୦୦।
ଲେଖିଲେ ପ୍ରଭୁ ପୀତବାସ । ଶରଣ ବାଲ୍ଗାଁ ଯେ ଦାସ(୭୨)।୧୦୧।
ଏ ଅଧ୍ୟା ଶଦ୍ଦେ (୭୩) ତିନ ପଦ । ସୁଜନେ ଏହା ଶୁଣୁଥିବ ।୧୦୨।
ଏହାର ଟୀକା (୭୪) କଲି ରସ । ମିଛୁଆ(୭୫) ଟୋକା କଲି ଆଶ ।୧୦୩।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ବାଲ୍ଗାଁ ଦାସିଆ ଶ୍ରୀ ଭଗବାନ
ସମ୍ବାଦେ ଶ୍ରୀହସ୍ତେ ଲେଖନ ନାମ ପ୍ରଥମ ଅଧ୍ୟାୟ ।

(୭୩) ଏଥିରେ ଶଦ୍ଦେତିନପଦ ଥିବାର ଜଣାଯାଉଥିଲେ ହେଁ ମୋଟ ଶଦ୍ଦେଦୁଇପଦରହିଛି ।
(୭୪) ଏଗାର—ପୋଥିପାଠ ।
(୭୫) କବି ପ୍ରତ୍ୟେକ ଅଧ୍ୟାୟରେ ନିଜକୁ ମିଛୁଆ ବୋଲି ବର୍ଣ୍ଣନା କରିଛନ୍ତି ।

# ଦ୍ୱିତୀୟ ଅଧ୍ୟାୟ

ନମସ୍ତେ ଦେବ ଦାମୋଦର । ଡମ୍ବରୁ (୧) କଟୀ ପୀତାମ୍ବର ।୧।
ନମସ୍ତେ ନନ୍ଦର ନନ୍ଦନ (୨) । ଶ୍ରୀଅଙ୍ଗେ ଅମୂଲ୍ୟ ବସନ ।୨।
କି ଇନ୍ଦ୍ର-ନୀଳମଣି କାନ୍ତି । ଶ୍ରୀମୁଖ ସୁଧାକର ଜ୍ୟୋତି ।୩।

(୧) କଟୀର ଶୋଭା ଡମ୍ବରୁ ବା ଡମ୍ବରୁ ଆକାର ବୋଲି ଅଳଙ୍କାର ଶାସ୍ତ୍ରରେ ପ୍ରସିଦ୍ଧି ରହିଛି । କବି ଏଠାରେ ବିଶ୍ୱର ଶୋଭଦାତ୍ମକ ଶ୍ରୀଜଗନ୍ନାଥଙ୍କ ରୂପ ବର୍ଣ୍ଣନା କରୁଥିବାରୁ ତାଙ୍କର କଟୀ ଡମ୍ବରୁ ଆକାର ବୋଲି କଳ୍ପନା କରିଛନ୍ତି ।
(୨) ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କ ସହିତ ଶ୍ରୀଜଗନ୍ନାଥଙ୍କ ଅଭେଦ କଳ୍ପନା ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ, ଶ୍ରୀଚୈତନ୍ୟ, ମହାକବି ସାରଳା ଦାସ ପ୍ରଭୃତିଙ୍କ ଲେଖାରେ ଦେଖିବାକୁ ମିଳେ ।

ନମସ୍ତେ ଦେବ ଜଗନ୍ନାଥ । ନମସ୍ତେ ଶଙ୍ଖଚକ୍ରହସ୍ତ ।୪।
ସିଂହାସନରେ ବଜେକର । ଚତୁର୍ଦ୍ଧାମୂର୍ତ୍ତ (୩) କ ଧର ।୫।
ଦକ୍ଷିଣ ପାଶେ କଳ୍ପବଟ । ଉତ୍ତର ତଟେ ସିନ୍ଧୁତଟ ।୬।
ଏ ଭୂମି ମଧ୍ୟେ ବଇକୁଣ୍ଠ । ସ୍ୱର୍ଗକୁ ଅର୍ଗଳ କବାଟ (୪) ।୭।
ଏମନ୍ତ ପୁରେ ପ୍ରଭୁ ଥାଇ । ଭକ୍ତଙ୍କ ଭାବ ଘେନୁ ଥାଇ ।୮।
ବାଉର କୁଳେ ହୋଇ ଜାତ (୫) । ପ୍ରଭୁରେ ଏଡ଼େ ସେ ଭକତ(୬) ।୯।
ଲୋଚନ ପଥରେ ଦେଖିଲେ । ପ୍ରଭୁଙ୍କୁ ଘରେ ବସାଇଲେ ।୧୦।
ଆସନ ପରେ (୭) ବସିକର । ଲେଖନ ପଞ୍ଝା ଧରିକର ।୧୧।
ପ୍ରଭୁ ଲେଖନ୍ତି ଭାଗବତ । ଆଗତ ଭବିଷ୍ୟ(୮) ଉକତ ।୧୨।
ପ୍ରଥମେ ରାଜା ଯେତେ ଯେତେ । ପଛେ ଲେଖନ୍ତି ଜଗନ୍ନାଥେ ।୧୩।
ପ୍ରଥମେ ଜଗନ୍ନାଥ (୯) ଦେବ । ପଶ୍ଚିମ (୧୦) ଅଙ୍କ କଟାଇବ ।୧୪।
ତାହାର ଥିବେ ତିନ ପୁତ୍ର । ନାମ ତା ଅଟଇ ଅନନ୍ତ (୧୧)।୧୫।

---

(୩) ଚତୁର୍ଦ୍ଧା । ପୋଥିପାଠ ।

(୪) ଶ୍ରୀଜଗନ୍ନାଥଙ୍କ ନାମ ସ୍ମରଣ ଫଳରେ ସ୍ୱର୍ଗଦ୍ୱାର ଅର୍ଗଳ ଉନ୍ମୁକ୍ତ ହୋଇଯାଏ ବୋଲି ଭକ୍ତ ଜନତାର ଧାରଣା ।

(୫) "ବାଉରକୁଳେ ହୋଇ ଭକ୍ତ" ବୋଲି ପୋଥିପାଠ ରହିଛି । କିନ୍ତୁ ପରପଦରେ ଥିବା 'ଭକତ' ପଦ ସହିତ ଅର୍ଥ ସାମଞ୍ଜସ୍ୟ ଆଣିବାକୁ ହେଲେ, ଏଠାରେ 'ଜାତ' ପାଠ ସମୀଚୀନ ହେବ । (୬) ଭଗତ ପୋଥିପାଠ ।

(୭) 'ଠାରେ' ପୋଥିପାଠ, କିନ୍ତୁ 'ଆସନଠାରେ' ଅପେକ୍ଷା 'ଆସନ ପରେ' ଅଧିକ ସଙ୍ଗତ ବୋଲି ମନେହୁଏ ।

(୮) ଭବିସ ପୋଥିପାଠ ।

(୯) କବି ଓଡ଼ିଶାର ଗଙ୍ଗବଂଶ ସମ୍ବନ୍ଧରେ ଏକ କାଳ୍ପନିକ ଚିତ୍ରାଙ୍କନ କରି ଶୁଣା କଥା ଉପରେ ରାଜାମାନଙ୍କ ନାମୋଲ୍ଲେଖ କରିଛନ୍ତି ।

(୧୦) ପଶ୍ଚିମ O. L./413 ପୋଥିପାଠ ।

(୧୧) ଅନନ୍ତ ବର୍ମ୍ମା ଚୋଡ଼ଗଙ୍ଗଦେବଙ୍କ ନାମକୁ ବୋଧହୁଏ କବି ଅନନ୍ତ ବୋଲି ଲେଖିଛନ୍ତି । ମାଦଳାପାଞ୍ଜିରେ ଯେପରି ରାଜାମାନଙ୍କର କାଳ୍ପନିକ ନାମ ରହିଛି ଏଠାରେ ମଧ୍ୟ କବି ଲୋକମୁଖରୁ ଶୁଣିଥିବା ନାମଗୁଡ଼ିକର ଉଲ୍ଲେଖ କରିଛନ୍ତି ।

| | | |
|---|---|---|
| ଅନନ୍ତ ରାଜା ହେବ ଯାଇ | । କଳସ ଛନ୍ଦ (୧୨) ଶିରେ ଦେଇ | ।୧୬। |
| କ୍ଷେତ୍ରକୁ ଆସିବ ଯେ ପୁଣ | । ବଢଣେ ହୋଇବ ସେ ଭିନ୍ନ(୧୩) | ।୧୭। |
| ତାହାର ପୁତ୍ର ରାମଚନ୍ଦ୍ର | । କ୍ଷେତ୍ରରେ ହୋଇବ ନରେନ୍ଦ୍ର (୧୪) | ।୧୮। |
| ପନ୍ଦର ଅଙ୍କ ଭୋଗକରି | । ରାଜ୍ୟ ଅଭ୍ୟାସି ମାଳଗିରି (୧୫) | ।୧୯। |
| ତଦନ୍ତେ ପାଟ ହେବ ହତ (୧୬) | । ପୃଥିବୀ ହୋଇବ ନକ୍ଷତ | ।୨୦। |
| ତଦନ୍ତେ ପ୍ରତାପ ଯେ ରୁଦ୍ର (୧୭) | । ବିଷ୍ଣୁ ଭଗତ ସେ ନରେନ୍ଦ୍ର | ।୨୧। |
| ଧର୍ମ ପାଳନ ତାର ମତି (୧୮) | । ନିର୍ମଳ ତାହାଙ୍କର ମତି (୧୯) | ।୨୨। |
| ଧରଣୀଧର ତାର ମନ୍ତ୍ରୀ | । ସାଧୁ ବୈଷ୍ଣବେ(୨୦) ହୋଇ ପ୍ରୀତି | ।୨୩। |
| ବିଷ୍ଣୁ ଭଗତି ପରାୟଣ | । ଶୁଣିମା ଶାସ୍ତ୍ର ଯେ ପୁରାଣ | ।୨୪। |
| ଗୁରୁ ବୈଷ୍ଣବ ସ୍ନେହକରି (୨୧) | । ପୃଥ୍ୱୀ ଧର୍ମରେ ଥିବ ପାଳି | ।୨୫। |
| ଅଠେଣ ଅଙ୍କ ନ ପାଇଣ (୨୨) | । କ୍ଷେତ୍ରରେ ହୋଇବ ଅଭ୍ୟାନ (୨୩) | ।୨୬। |
| ତାହାର ତନପୁତ୍ର ଜନ୍ମ | । କରୁଣାକର ବୋଲି ନାମ (୨୪) | ।୨୭। |

---

(୧୨) କଳଶ ଚତ୍ର କଳଙ୍ଗ କ୍ଷେତ୍ର O.L./413 ପୋଥିପାଠ ।

(୧୩) 'ହୋଇବେ ଅଭିନ୍ନ' O.L./413 ପୋଥିପାଠ । ଏପରି ପାଠ ଫଳରେ ଅର୍ଥ ସଙ୍ଗତ ହେଉନାହିଁ । ସେ ବଢଣ ଅଙ୍କ ଭୋଗକରି ରାଜପଦରୁ ଭିନ୍ନ ଅର୍ଥାତ୍ ମୃତ୍ୟୁମୁଖରେ ପଡ଼ିଥିବାର କବିଙ୍କ ଧାରଣା ।

(୧୪) ନରାନ୍ଦ୍ର ପୋଥିପାଠ ।

(୧୫) ରାଜା ଅଭ୍ୟାସିଲୁ ରାଜା ଉଭାନ O.L./413 ପୋଥିପାଠ । ଏହା ଫଳରେ ଅର୍ଥ ସଙ୍ଗତ ହେଉନାହିଁ କିମ୍ବା ଛନ୍ଦ ରହୁନାହିଁ ।

(୧୬) ପାଟ ହେବ ହତ ପୋଥିପାଠ କିନ୍ତୁ ଏଠାରେ ପାଟ ଅର୍ଥାତ୍ ରାଜ୍ୟ ହତ ହେବ ବୋଲି ପାଠ ସମୀଚୀନ । (୧୭) ଇନ୍ଦ୍ର ପୋଥିପାଠ । (୧୮) ଧର୍ମ ସାହାସ୍ର ଶୁଣେ ନିତ O.L /413 ପାଠ । (୧୯) ନିର୍ମଳ ହୋଇବ ଭଗତ O.L./413 ପାଠ ।

(୨୦) ବୈଷ୍ଣବ ପୋଥିପାଠ ।

(୨୧) ପରଜା ପୁତ୍ର ସମ କରି O.L./413 ପୋଥିପାଠ ।

(୨୨) ୧୮ ଅଙ୍କ କାଟିଣ O.L./413 ପୋଥିପାଠ । ଏହି ପାଦର ଅର୍ଥ ସେ ରାଜା ୨୭ ଅଙ୍କରେ ସ୍ୱର୍ଗଗାମୀ ହୋଇଥିଲେ, ତେଣୁ ୨୮ ଅଙ୍କ ସେ ଭୋଗ କରିନଥିଲେ ।

(୨୩) ଅଭ୍ୟାନ—ଖୁବ୍ ସମ୍ଭବତଃ ଉତ୍ଥାନ ଅର୍ଥରେ ପ୍ରୟୋଗ କରାଯାଇଛି ।

(୨୪) କରୁଣାକର ନାମରେ କୌଣସି ରାଜା ଓଡ଼ିଶା ରାଜସିଂହାସନରେ ଅଧିଷ୍ଠିତ ହୋଇ ନ ଥିଲେ । କବି କେବଳ ଶୁଣା କଥା ଉପରେ ଏପରି ଲେଖିଥିବାର ଜଣାଯାଏ ।

ତାହାର ବଡ଼ପୁତ୍ର ହେବ । ଲଙ୍ଗୁଳା (୨୫) ନରସିଂହ ଦେବ ।୨୮।
ସେମନ୍ତେ ଯିବ କଟୁଦନ । କଳି ହୋଇବ ବର୍ତ୍ତମାନ ।୨୯।
ଲଙ୍ଗୁଳା ନରସିଂହ ହୋଇ । ବାଇଶି ଅଙ୍କ ସେ ଅଟଇ (୨୬) ।୩୦।
ଗୋବିନ୍ଦ ବୋଲି ହେବ(୨୭)ରଜା । ପାଳିବ ଜନ ସେ ପରଜା ।୩୧।
ବହୁତ ପ୍ରତିଜ୍ଞା କରିବ । ସତରେ ଅଭିନ୍ନ ହୋଇବ ।୩୨।
କାଳିଆ ବୋଲି କରି ପୁତ୍ର (୨୮) । ତାହାର କୁଳେ ହେବ ଜାତ ।୩୩।
ତାହାର ତହୁଁ ପାଟ (୨୯) ଶେଷ । ନିଧନ ହେବ ଗଙ୍ଗବଂଶ ।୩୪।
ଏମନ୍ତେ ଯିବ କଟୁଦନ । କେହି ନଥିବେ ସେ ରାଜନ(୩୦) ।୩୫।
ତଦନ୍ତେ ହାଲୁକ(୩୧) ସେ କହି । କରିବେ ଗଙ୍ଗା କଟକାଇ (୩୨) ।୩୬।
ହାଲେକ ନାମେ ହରିଚନ୍ଦ୍ର (୩୩) । ରାଜନ (୩୪) ତେଲଙ୍ଗା ମୁକୁନ୍ଦ ।୩୭।
ଗଙ୍ଗାକୂଳକୁ ଯିବେ ମାରି । ଗଡ଼ଦ୍ୱେ ସ୍ୱର ସେ ବସ୍ତୁରି ।୩୮।
ସୈନ୍ୟ ତାହାର ଘେନ ସଙ୍ଗ । ବୋଲିବ ଓଡ଼ିଶାକୁ ଭାଙ୍ଗ ।୩୯।
କଳାପାହାଡ଼ ରଣରଙ୍ଗେ (୩୫) । ଗୁପତେ ଆସି ସେ ସାରଙ୍ଗେ (୩୬) ।୪୦।
ବଳ ଆସିବେ ତା'ର ଯୋଡି । ପକାଇ କଳ୍ପବଟ କାଟି ।୪୧।

---

(୨୫) ଲଙ୍ଗୁଳା ନରସିଂହ ଦେବ ଅର୍ଥାତ୍ ଗଙ୍ଗରାଜ ଅନଙ୍ଗଙ୍କ ଦେବଙ୍କ ପୁତ୍ର କୋଣାର୍କ ମନ୍ଦିରର ପ୍ରତିଷ୍ଠାତା ଗୌଡ଼ ବିଜେତା ନରସିଂହଦେବ (୧ମ)ଙ୍କ ପିତା କରୁଣାକର ଥିବାର ଐତିହାସିକ ପ୍ରମାଣ ମିଳେ ନାହିଁ । ନାଙ୍ଗଡ଼ା ପୋଥିପାଠ ।

(୨୬) ନରସିଂହ ଦେବ (୧) ୨୨ ଅଙ୍କ ଭୋଗ କରିଥିବାର ପ୍ରମାଣ ମିଳେ ନାହିଁ ।

(୨୭) ଗୋବିନ୍ଦ ଦେବ ବୋଲି ରଜା O.L./1199 ପାଠ ।

(୨୮) ବାଲିଗାଁ ବୋଲି କରି ପୁତ୍ର O.L./413 ପୋଥିପାଠ ।

(୨୯) ତାହାରଠାରୁ ଦେବ ଶେଷ । O.L./413 ପୋଥିପାଠ ।

(୩୦) ପ୍ରଜାଜନ O.L /1199 ପୋଥିପାଠ ।

(୩୧) ହୁଲେକ O.L./1199 ପାଠ । (୩୨) ଆକ୍ରମଣ ।

(୩୩) ନରିଚନ୍ଦ୍ର O.L /1199 ପାଠ । (୩୪) ତଦନ୍ତେ O.L./1199 ପାଠ ।

(୩୫) ଘେନ ସଙ୍ଗେ O.L./1199 ପୋଥିପାଠ ।

(୩୬) କଳାପାହାଡ଼ ସାରଙ୍ଗଗଡ଼ ପଟ୍ଟ ଖୋର୍ଦ୍ଧା ଓ ପୁରୀ ଆକ୍ରମଣ କରିଥିଲେ ବୋଲି ଐତିହାସିକ ବିବରଣୀ ମିଳେ ।

କ୍ଷେତ୍ରରେ କରିବ ଅନୀତି | ଦେବତା ଅପୂଜା ହୁଅନ୍ତ (୩୭) |୪୨|
ଆମ୍ଭଙ୍କୁ ଚାପରେ ବସାଇ | ଓଡ଼ିଶା କଟୁଦନ (୩୮) ରହି |୪୩|
ରାଜା ଯେ ରହିଣ କଟେକ | କହିବେ ତାର ଆଗେ(୩୯)ଲୋକ |୪୪|
ବେଗେ ଆସିବେ ଗଜପତି | ଦବନ (୪୦) ପଲାଇବେ ଧାତି |୪୫|
ଏମନ୍ତେ ଆସି (୪୧) ମହାପତି | ସେ ରାଜା ହେବ ଆତ୍ମାଘାତି(୪୨) |୪୬|
ମନରେ ଚିନ୍ତା ଉଦ୍‌ବେଗ (୪୩) | ପନ୍ଦର ଅଙ୍କ କରି ଭୋଗ |୪୭|
କ୍ଷେତ୍ରରେ ହୋଇବ ଉତ୍ଥାନ (୪୪) | ଲେଖନ୍ତି ପ୍ରଭୁ ଭଗବାନ |୪୮|
ଏମନ୍ତେ କଳି ଘୋର ଜାତ | ଓଡ଼ିଶା ବଡ଼ (୪୫) ଉତ୍‌ପାତ |୪୯|
ପାଞ୍ଚ ଅଙ୍କର (୪୬) ଯାଏ ପୁଣ | ଓଡ଼ିଶା ନଥିବେ ରାଜନ |୫୦|
ହସ୍ତିନା ମାନସିଂହ ଆସି | ଓଡ଼ିଶା ସୁବା (୪୭) ପଣେ ବସି |୫୧|
ଆଠ ଅଙ୍କରେ ସେ ରାଜୁତ | ଓଡ଼ିଶା କରିବ ତ୍ୟକତ (୪୮) |୫୨|
କ୍ଷେତ୍ରରେ (୪୯) ରାମଚନ୍ଦ୍ର ଥିବ | ତାହାକୁ ଯବନ ଦେଖିବ |୫୩|
ଶ୍ରୀ ନୀଳକନ୍ଦେ ପଶିକରି | ରହିବେ ସୈନ୍ୟ ବଳ ପୂରି(୫୦) |୫୪|
ମାନ ଯେ ସିଂହ ବିଚାରିବ | ରାମକୁ ଟୀକା ଦେଇଯିବ |୫୫|
ରାମଚନ୍ଦ୍ର ଯେ ହେବ ରାଜା | ବହୁତ ହୋଇବ ତରିଜା (୫୧) |୫୬|

---

(୩୭) ରହନ୍ତି O.L./413 ପୋଥିପାଠ । (୩୮) କଟୁଦନ O.L./413 ପୋଥିପାଠ ।
(୩୯) ଉକ୍ତ ପଦଟି O.L./413 ପୋଥିରେ ନାହିଁ ।
(୪୦) ଦବନ ଯବନ ଶବ୍ଦର ଗ୍ରାମ୍ୟଜ ଶବ୍ଦ ଦମନ O.L./1199 ପୋଥିପାଠ ।
(୪୧) ଥିବ O.L./1199 ପୋଥିପାଠ । (୪୨) ଆତ୍ମାଘାତୀ O L./1199 ପାଠ ।
(୪୩) ଉଦ୍‌ଯୋଗ O.L./413 ପୋଥିପାଠ । (୪୪) ନିଧନ O.L./1199 ପାଠ ।
(୪୫) ଓଡ଼ିଶା ହେବ ନିଜେ କ୍ଷେତ୍ର O.L./1199 ପାଠ ।
(୪୬) ପାଞ୍ଚ ଅଙ୍କରେ ପ୍ରମାଣ O.L /1199 ପାଠ ।
(୪୭) ମୋଗଲ ରାଜତ୍ୱ ଆରମ୍ଭରେ ବଙ୍ଗ, ବିହାର ଓ ଓଡ଼ିଶା ମିଶି ଗୋଟିଏ ‘ସୁବା’ ବା ‘ପ୍ରଦେଶ’ ରୂପେ ଗଠିତ ହୋଇଥିଲା । ଆକବର୍ ବାଦଶାହ୍ ରାଜା ମାନସିଂହଙ୍କୁ ସୁବାଦାର ରୂପେ ଓଡ଼ିଶାକୁ ପଠାଇଥିଲେ ।
(୪୮) ନିପାତ O L./1199 ଓ O.L /413ରେ ତକତ ଶବ୍ଦ ରହିଛି । ରାଜା ମାନସିଂହ ୧୫୯୩ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ରାଜ୍ୟ ଆକ୍ରମଣ କରିଥିଲେ ।
(୪୯) କ୍ଷେତ୍ରରେ—ପୁରୀଧାମରେ; କିନ୍ତୁ O.L./413 ପୋଥିରେ । ଓଡ଼ିଶା ରାମଚନ୍ଦ୍ର ଥିବ ବୋଲି ଲେଖାଯାଇଛି ।
(୫୦) ନୀଳକନ୍ଦରେ ପଶିକରି । ରହିବେ ସୈନ୍ୟବଳ ମାରି O.L./1199 ପୋଥିପାଠ ।
(୫୧) ତରିଜା—ପ୍ରତାପୀ ।

ରାମଚନ୍ଦ୍ର ଯେ ବରଜିବ । ବିଷ୍ଣୁ ବୈଷ୍ଣବେ ଧାନ ଦେବ(୫୨)।୫୭।
ଆମ୍ଭେ ଯେ ଆଜ୍ଞା ହେବୁ ପୂଣ । କୁଜଙ୍ଗେ ହୋଇବୁ ଗୋପ୍ୟାନ ।୫୮।
ଆଜ୍ଞା ସନ୍ଦେଶ ଶୁଣି ମୋର । ଗୁପତେ କରିବ ବିଚାର ।୫୯।
ଭକ୍ତଙ୍କ ସଙ୍ଗତେ ବିଚାର । ସେଠାକୁ ଯିବେ ଭକ୍ତ ଚଳି ।୬୦।
ମୋତେ ଆଣିଲେ ମୋର ଭକ୍ତ । ଶ୍ରୀ ନୀଳକନ୍ଦେ ହେବୁ (୫୩)ସ୍ଥିତ ।୬୧।
ରଥେ ବସିବୁ ଆସି ପୁଣ । ସ୍ୱର୍ଗେ ଦେଖିବେ(୫୪) ଦେବଗଣ ।୬୨।
ବସାଇ ଷୋଳ ଯେ ଶାସନ । ପରଜା (୫୫) ପାଳିବେ ରାଜନ ।୬୩।
ଖୋରଧା କଟକ ଯେ କରି । ଦେବତା ବିପ୍ରଜନେ ପାଳି ।୬୪।
ଏମନ୍ତ ଗଲା କେତେଦିନ । ଅଣତ୍ରିଶରେ ଅଭ୍ୟାନ (୫୬) ।୬୫।
ରାମ ଯେ ଚନ୍ଦ୍ରର ତନୁଜା । ପୁରୁଷୋତ୍ତମ ଦେବ ରାଜା (୫୭) ।୬୬।
ତାହାର ପାତ୍ର ମାନେ ଥିବେ । ବଳେଣ କାର୍ଯ୍ୟ କରିଯିବେ (୫୮) ।୬୭।
ପାତ୍ରକୁ ଧରାଇ ଭଜନ । ଅଠାଇଶରେ ସେ ଅଭ୍ୟାନ(୫୯) ।୬୮।
ତଦନ୍ତେ ନରସିଂହ ଦେବ । ଅପାର ଦିନ ରାଜା ହେବ (୬୦) ।୬୯।
ରାଜା (୬୧) ଅପୁତ୍ରୀ ହୋଇକରି । ସନ୍ନ୍ୟାସୀ ରୂପ ଥିବ ଧରି ।୭୦।
କ୍ଷେତ୍ର ଭିତରେ ରାଜା ଥିବ । ମୁଗୁଲ ମୁଣ୍ଡ କାଟି ନେବ ।୭୧।
ତଦନ୍ତେ ଗଙ୍ଗାଧର ଦେବ । ଅଳପ (୬୨) ଦିନ ରାଜା ହେବ ।୭୨।
ଛ'ମାସ ପନ୍ଦର ଯେ ଦିନ । ସେ ରାଜା ହୋଇବ ଅଭ୍ୟାନ(୬୩)।୭୩।

---

(୫୨) ରାମଚନ୍ଦ୍ର ଯେ ବିଚାରିବ । ବିଷ୍ଣୁଙ୍କ ମନେ ଧ୍ୟାନ ହେବ । O.L./1199 ପାଠ ।
(୫୩) ସେଠାରେ ଥିବେ ମୋର ଭକ୍ତ । ଶ୍ରୀ ନୀଳନ୍ଦେ ହେବୁ ଜାତ O.L./1199 ପାଠ ।
(୫୪) ଥରେ ବସିବୁ ଆମ୍ଭେ ପୁଣ । ସଙ୍ଗେ ଘେନିଣ ଦେବଗଣ । O.L./1199 ପୋଥିପାଠ । (୫୫) ଏମାନେ କରିବେ O.L./1199 ପୋଥିପାଠ ।
(୫୬) ଉକ୍ତ ୬୪-୬୫ ପଦ O.L./413 ପୋଥିରେ ନାହିଁ ।
(୫୭) ରାମ ଯେ ଚନ୍ଦ୍ର ଦେବ ରାଜା । ପୁରୁଷୋତ୍ତମେ ତା' ତରିଜା । O.L./1199 ପୋଥିପାଠ ।
(୫୮) ବନେ ତା' କାର୍ଯ୍ୟ କରୁଥିବେ । O.L./1199 ପୋଥିପାଠ ।
(୫୯) ଅଳପ ଦିନେ ସେ ଅଭ୍ୟାନ O.L./413 ପାଠ ।
(୬୦) ଓଡ଼ିଶା ରାଜୁତ ହୋଇବ । O.L./413 ପାଠ ।
(୬୧) ସେ ଅପୁତ୍ରକ ହୋଇକରି । O L /1199 ପୋଥିପାଠ ।
(୬୨) ଅପାରଦିନ O.L./1199 ପାଠ । ପରପଦରେ ଥିବା ଛ'ମାସ ପନ୍ଦରଦିନରୁ ଏଠାରେ ଅଳପଦିନ ହେବା ଯୁକ୍ତିସଂଗତ ।
(୬୩) ଗୋପ୍ୟାନ । O.L./413 ପୋଥିପାଠ ।

ତଦନ୍ତେ ବଳଭଦ୍ର ଦେବ । ଆନନ୍ଦେ ପରଜା (୭୪) ପାଳିବ ।୭୪।
ସେ ରାଜା କଟୁ ଦିନ ଥାଇ । ଏଗାର ଅଙ୍କ ସେ କଟାଇ (୭୫) ।୭୫।
ତଦନ୍ତେ ମୁକୁନ୍ଦ ଯେ ଦେବ । ଖଣ୍ଡ କୁଳକୁ ବନାଶିବ (୭୬) ।୭୬।
(୭୭) ତାହାଙ୍କ ପୁତ୍ର ଦିବ୍ୟସିଂହ । ଅନେକ କର ରଣରଙ୍ଗ ।୭୭।
ତେଣିକି ଗୋଳ ହେବ ନାସ । ରାଜା ଅଭ୍ୟାନ ଚଷ୍ଟାଳିଶ(୭୮) ।୭୮।
ଦିବ୍ୟ ଯେ ସିଂହ ଦେବ ରାଜା । ମୁକୁନ୍ଦଦେବ (୭୯) ତା ତନୁଜା ।୭୯।
ସେ ରାଜା ସାତ ଅଙ୍କ ଠାର । ଗୋଳ ଯେ ହୋଇବ ଅପାର(୮୦) ।୮୦।
କଳି ଯେ ଗ୍ରାସିବ ଭୁବନ (୮୧) । ଚନ୍ଦ୍ର ପଡ଼ିବ ନବଘାତ ।୮୧।
ଓଡ଼ିଶା ହୋଇବ ନୃପତି (୮୨) । ଖଣ୍ଡକୁ ମାରିବ ନପାତି ।୮୨।
ଅନୀତି କରିବ ରାଜନ । ବଳେ କରିବ ସୁରାପାନ (୮୩) ।୮୩।
ତଦନ୍ତେ ହରେକୃଷ୍ଣ ଦେବ । ସାତରେ ଅଭ୍ୟାନ ହୋଇବ(୮୪) ।୮୪।

---

(୭୪) O.L./413 ପୋଥିରେ ଏହି ଦୁଇପାଦ ଓଲଟପାଲଟ ହୋଇଛି ।
(୭୫) ସେ ଅଟଇ O.L./1199 ପାଠ । (୭୬) ଘୋର ହେବ । O.L./1199ପାଠ ।
(୭୭) ତାଙ୍କର O.L./1199 ପାଠ ।
(୭୮) ଛୟାଳିଶ O.L./413 ପୋଥିପାଠ । କିନ୍ତୁ ଐତିହାସିକ ଗଣନାରୁ ଜଣାଯାଏ ରାଜା ଦିବ୍ୟସିଂହ ଦେବ ୩୪ ଅଙ୍କ ଭୋଗ କରିଥିଲେ । ତେଣୁ ମୋଟ ୨୭ ବର୍ଷ ୫ମାସ ୨ଦିନ ଭୋଗ କରିଥିବାର ପ୍ରମାଣ ରହିଛି ।
(୭୯) ଦିବ୍ୟସିଂହ ଦେବଙ୍କ ପରେ ହରେକୃଷ୍ଣ ଦେବ ରାଜା ହୋଇଥିବାର ଐତିହାସିକ ପ୍ରମାଣ ରହିଛି । ପ୍ରସ୍ତୁତ ପୁସ୍ତକରେ ଥିବା ଦିବ୍ୟସିଂହ ଦେବଙ୍କ ପୁତ୍ର ମୁକୁନ୍ଦଦେବ ଏକ ନୂତନ ତଥ୍ୟ । ଏଠାରେ 'ମୁକୁନ୍ଦଦେବର ତନୁଜା' ବୋଲି ପାଠ ହେଲେ ସମୀଚୀନ ହେବ ।
(୮୦) ଏଠାର O.L./1199 ପାଠ ।
(୮୧) କଳି ଯେ ଲାଗିବ ଜଗତ । O.L /413 ପୋଥିପାଠ ।
(୮୨) ଓଡ଼ିଶା ହେବ ଗଜପତି O.L./1199 ପୋଥିପାଠ । ଉଭୟ ପୋଥିର ପାଠ ସନ୍ଦେହାସ୍ପଦ । ତେଣୁ ଏଠାରେ ଓଡ଼ିଶା ରାଜ୍ୟ ଗଜପତି ପାଠ ହେବା ସମୀଚୀନ ।
(୮୩) ବଳେ ପିଇବ ସୁରାପାନ—ଉଭୟ ପୋଥିର ପାଠ ।
(୮୪) O.L./1199 ପୋଥିରେ ହରେକୃଷ୍ଣ ଚଉଦଶ ଅଙ୍କରେ ନାଶିବ ବୋଲି ଲେଖାଯାଇଛି । କିନ୍ତୁ ଐତିହାସିକ ଗଣନାରୁ ସେ ସାତ ଅଙ୍କରେ ଇନ୍ଦ୍ରଧାମ ତ୍ୟାଗ କରିଥିଲେ ବୋଲି ଜଣାଯାଏ । ଏଠାରେ ନକଲକାର ପ୍ରମାଦରୁ ଦିବ୍ୟସିଂହ ଦେବଙ୍କ ସ୍ଥାନରେ ସାତ ଓ ହରେକୃଷ୍ଣ ଦେବଙ୍କ ସ୍ଥାନରେ ଚଉଦଶ ଲେଖାଯାଇଛି ।

ଏହୁ ଠାବରୁ କଳି ଲଗି । ଓଡ଼ିଶା ହେଲେ ସିବ ଭଗ୍ନ ।୮୫।
ତଦନ୍ତେ ଗୋପୀନାଥ ଦେବ । ସେ ଥୋକେ ଦିନ ରାଜା ହେବ(୭୫)।୮୬।
ଓଡ଼ିଶା ରାଜତ୍ତ ହୋଇଣ । ଦଣ ଯେ ଅଙ୍କ (୭୬) କଟାଇଣ ।୮୭।
ସେଠାରୁ ହେବ ମହାବାତ (୭୭) । କଳି ଲଗିବ ଉତପାତ ।୮୮।
ଦବନ ଆସିବେ ଯେ ମାଡ଼ି (୭୮) । ଓଡ଼ିଶା ପଳାଇବେ ଛାଡ଼ି (୭୯) ।୮୯।
ଅନେକ ଗୋଳ ହେବ ପୁଣ । ବାଜିବ ମହାଘୋର ରଣ ।୯୦।
ଘେର ଖଣ୍ଡ ଯେ ମାଡୁଥିବେ । ପରଜା ଘର ବନ୍ଧନେବେ ।୯୧।
ରାଜା ଯେ ଅବିବେକ ହୋଇ । ଗୁହାରି ନ ଶୁଣିବେ କେହି ।୯୨।
ଏମନ୍ତେ ଆଗତ (୮୦) ବଚନ । ଶ୍ରୀହସ୍ତେ କରନ୍ତି ଲେଖନ ।୯୩।
ରାମ ଯେ ଚନ୍ଦ୍ର ଦେବ ପୁଣ । ରାଜା ଭକ୍ଷିବ ସୁରାପାନ ।୯୪।
ରାଜ୍ୟରୁ ଛାଡ଼ି ପଳାଇବ । ମୁଗୁଲ ସଙ୍ଗେ ଜାତି ଦେବ ।୯୫।
ଓଡ଼ିଶା ଛାଡ଼ି ରାଜା ଯିବ । ପଶ୍ଚିମେ ଗୋପ୍ୟାନ ହୋଇବ(୮୧) ।୯୬।
ବାଲ୍ଗାଁ ଦାସ ଏହା ଶୁଣି । ପଦେ ଲେଖନ୍ତି ଚକ୍ରପାଣି(୮୨) ।୯୭।
ଧନ୍ୟ ବାଲ୍ଗାଁ ଦାସ ତୋର । ତୋ ଘରେ ବିଜେ ଦାମୋଦର ।୯୮।
ବାହ୍ମଣ ହୋଇ ଏଡ଼େ ଭକ୍ତ । ଘରେ ଭୁଞ୍ଜିଲେ ଜଗନ୍ନାଥ (୮୩) ।୯୯।
ଧନ୍ୟ ବାଲ୍ଗାଁ ଦାସେ ଧନ୍ୟ । ତୋଠାରୁ ନାହିଁ ଏଡ଼େ ପୁଣ୍ୟ ।୧୦୦।
ପୁଣି ତନ୍ତ୍ରରୁ ଦାସେ ଉଠି । ପ୍ରଭୁଙ୍କ ଗୃହାନ୍ତ ଲେଉଟି ।୧୦୧।

---

(୭୫) ଏମନ୍ତେ ଗୋପୀନାଥ ଦେବ । ସେ କଚ୍ଛଦିନ ରାଜା ହେବ । O.L./1199 ପାଠ ।

(୭୬) ଓଡ଼ିଶା ରାଜୁତେ ନଥିବ । ଖୋଜିଣ ତାହାକୁ ମାରିବ । ଓଡ଼ିଶା ରାଜୁତ ହୋଇଣ । ଏଗାର ଅଙ୍କ କଟାଇଣ । O.L./413 ପାଠ । (୭୭) ସେଠାରୁ ଗୋଲକୁଣ୍ଡା ଜାତ । O.L./413 ପୋଥିପାଠ ।

(୭୮) ଦମନ ଆସିବେ ତ ମାଡ଼ି—O.L./1199 ପୋଥିପାଠ ।

(୭୯) ଭାଜି—O.L./413 ପୋଥିପାଠ । (୮୦) ଆଗମ—O.L./413 ପୋଥିପାଠ ।

(୮୧) ୯୪, ୯୫, ୯୬, ଏହି ତିନି ପଦ O. L. 1199 ପୋଥିରେ ନାହିଁ; କିନ୍ତୁ ଇତିହାସରୁ ଜଣାଯାଏ ଗୋପୀନାଥଙ୍କ ଆକସ୍ମିକ ବିୟୋଗ ପରେ ରାମଚନ୍ଦ୍ର ଦେବ (ଦ୍ୱିତୀୟ) ରାଜା ହୋଇଥିଲେ । ମାଦଳାପାଞ୍ଜି ଓ ଅନ୍ୟାନ୍ୟ ଐତିହାସିକ ବିବରଣୀରୁ ଜଣାଯାଏ ସୁଜାଉଦ୍ଦୀନ ଅହମ୍ମଦ ଖାଁଙ୍କ କନ୍ୟାର ପ୍ରେମରେ ପଡ଼ି ରାମଚନ୍ଦ୍ର ଦେବ ଇସଲାମ୍ ଧର୍ମ ଗ୍ରହଣ କରିଥିଲେ ।

(୮୨) ବାଲ୍ଗାଁ ଦାସ ନାମ ପୁଣି । ପଦ ଲେଖନ୍ତି ଯଦୁମଣି—O.L./1199 ପୋଥିପାଠ ।

(୮୩) ଘରେ ବସିଲେ ଜଗନ୍ନାଥ—O.L./413 ପାଠ ।

କି କରି ଲେଖୁଅଛ ହରି । ମୋ ଆଗେ କହ ତା ବିସ୍ତାରି (୮୪) ।
କହନ୍ତି ପ୍ରଭୁ ଭଗବାନ । ଦାସିଆ ମାଗୁଛି ଶରଣ ।୧୦୩।
ଏ ଅଧ୍ୟା ଶବ୍ଦେ ଛନ୍ଦ ପଦ । ଶୁଣିଲ ଲୋକ ଯେ ପାଇବ ।୧୦୪।
ବାଲିଗାଁ ଦାସ ପାଦେ ଆଶ । ମିଳୁଆ ଠୋକାର ନିବାସ (୮୫)।୧୦୫।

ଇତି ଶ୍ରୀମଦ୍‌ଭାଗବତେ ଭବିଷ୍ୟ ପୁରାଣେ
ବାଲିଗାଁ ଦାସିଆ ଶ୍ରୀକୃଷ୍ଣସମ୍ବାଦେ ନାମ ଦ୍ୱିତୀୟ ଅଧ୍ୟାୟ (୮୬) । □□□

## ତୃତୀୟ ଅଧ୍ୟାୟ

କହନ୍ତି ପ୍ରଭୁ ପୀତବାସ । କଳିର ଆଗତ ଭବିଷ ।୧।
ବାଲିଗାଁ ଦାସେ ଲୁଗା ବୁଣି । ଲେଖନ୍ତି ପ୍ରଭୁ ଚକ୍ରପାଣି ।୨।
ଚଉଦେ(୧) ଖେଡ଼(୨) ହେବ ଯେବେ । ଆଗତ ଲେଖନ୍ତି ଶ୍ରୀହସ୍ତେ ।୩।
ଏ ରାଜା ରାମଚନ୍ଦ୍ର ଦେବ । ପ୍ରତାପୀ (୩) ବୀର ସୁରଦେବ ।୪।
ଆଠ ଯେ ଅଙ୍କଠାରୁ ପୁଣି । ଲାଗିବ ମହାଘୋର (୪) ରଣ ।୫।

---

(୮୪) ବିସ୍ତର—O.L./1199 ପୋଥିପାଠ ।
(୮୫) ୧୦୪ ଓ ୧୦୫ ପଦ—O.L./413 ପୋଥିରେ ନାହିଁ ।
(୮୬) ଇତି ଶ୍ରୀମଦ୍‌ଭାଗବତେ ମହାପୌରାଣେ ଶ୍ରୀ ଭଗବାନ ବାଲିଗାଁ ଦାସ ସମ୍ବାଦେ ଆଗତ ଭବିଷ ଉକତ କଥନେ ନାମ ଦୁତୀୟ ଅଧ୍ୟାୟ O.L /1199 ପୋଥିପାଠ ।

(୧) ଚଉଶେ—O.L./413 ପୋଥିପାଠ ।
(୨) ଖେଳ O L./1199 ପୋଥିପାଠ । ଏହି ପାଦଟି O.L./1199 ପୋଥିରେ 'ଚଉଦ ଅଙ୍କେ ଖେଳ ଯେବେ' ବୋଲି ଲେଖାଅଛି । ଗଜପତି ରାଜା ରାମଚନ୍ଦ୍ର ଦେବ (ଦ୍ୱିତୀୟ) ସମୁଦାୟ ଚଉଦଟି ଅଙ୍କ ଭୋଗ କରିଥିଲେ । ସେ ୨୭-୮-୧୭୨୭ରେ ତାଙ୍କ ଚଉଦ ଅଙ୍କ ଆରମ୍ଭ ହେବା ପରେ ପରେ ମୃତ୍ୟୁ ବରଣ କରିଥିଲେ ।
(୩) ପ୍ରତାପ—O.L./1199 ପୋଥିପାଠ ।
(୪) ଘୋରରଣ ପୁଣ O.L./413 ପୋଥିପାଠ ।

ଦମନ ଆସିବେ ଯେ ବାହ୍ନ । ପାଞ୍ଚ ସହସ୍ର ବଳ ଥାଇ ।୬।
ପଥିକା ରହିବେ ଯେ ଘୋଟି । ଗୋରୁ ଯେ ଜବେ (୫) କରି କାଟି ।୭।
ଅଜା ମହିଷୀ (୬) ହେଡ଼ା ମାନ । କାଟି ଯେ ଖାଇବେ ଦମନ ।୮।
ଅନେକ ଅତ୍ୟାଚାର କରି । ହରିବେ ବ୍ରାହ୍ମଣଙ୍କ (୭) ନାରୀ ।୯।
ପର ବନିତା ଯେ ରମଣୀ । ଘର ଦୁଆର ବନ୍ଧ ଆଣି (୮) ।୧୦।
ସ୍ତ୍ରୀ ଶିଶୁ ବାଳେକ ନେବେ (୯) ଧରି । ଘର ପୋଡ଼ିବେ ନ (୧୦) ବାହୁରି ।୧୧।
ସ୍ତ୍ରୀ ଶିଶୁ ବାଳେକ ବ୍ରହ୍ମ ହତ୍ୟା । କନ୍ଧରୁ କାଢ଼ିବେ (୧୧) ପଇତା ।୧୨।
ଦମନ ଦାଢ଼ (୧୨) ନିରନ୍ତର । ଛୁଡ଼ି (୧୩) ପଳାଇ ନିରନ୍ତର ।୧୩।
ଝାଡ଼ରେ (୧୪) ଖଣ୍ଡାଇତ (୧୫)ଥାଇ । ପରଜା ଦ୍ରବ୍ୟ ନେବେ ବନ୍ଧ ।୧୪।
ଗୁହାରି ନ ଶୁଣିବେ ରାଜା । ବିକଳ ହେବେ ଜନ (୧୬) ପ୍ରଜା ।୧୫।
ଷଣ୍ଢ ଯେ ସଂଗ୍ରାମ ଛାଡ଼ିବେ । ଯୁଦ୍ଧ ଦେଖିଲେ ପଳାଇବେ ।୧୬।

---

(୫) ଜବ କର କାଟି O.L./1199 ପୋଥିପାଠ । ମୁସଲମାନମାନଙ୍କର ଗୋରୁ କାଟିବାକୁ ଜବେଇ କରିବା ବୋଲି କୁହାଯାଏ । ଖୁବ୍ ସମ୍ଭବତଃ ଏହା ଉର୍ଦ୍ଦୁ ଜବ୍ର (ବଳପୂର୍ବକ) ଶବ୍ଦରୁ ହୋଇଛି ।

(୬) ଗଣ୍ଡାମ ଋଷି ହେଡ଼ାମାନ—O.L./1199 ପୋଥିପାଠ ।

(୭) ହରିବେ ଦ୍ୱିଜ ବ୍ରହ୍ମଗୃଷି—O.L./413 ପୋଥିପାଠ ।

(୮) ପରର ଦ୍ରବ୍ୟ ବନ୍ଧ ଆଣି—O.L./1199 ପୋଥିପାଠ ।

(୯) ସ୍ତ୍ରୀ ଶିଶୁ ବାଳକେ ଯେବା ହରି—O.L./413 ପୋଥିପାଠ ।

(୧୦) ବାସ ପୋଡ଼ିବେ ନ ବାହୁରି ।—O.L./1199 ପୋଥିପାଠ ।

(୧୧) ଛଡ଼ାଇ—O.L./1199 ପୋଥିପାଠ ।

(୧୨) ଯାହ—O.L./1199 ପୋଥିପାଠ । ଦାଢ଼—ଅତ୍ୟାଚାର ।

(୧୩) ଛୁଡ଼ି ଯେ ଯିବେ—O.L./413 ପୋଥିପାଠ । (୧୪) ଝାଡ଼—ଜଙ୍ଗଲ ।

(୧୫) ଓଡ଼ିଶାର ବୀର ପାଇକମାନଙ୍କୁ ଖଣ୍ଡାୟତ କୁହାଯାଏ । ଖଣ୍ଡାୟତମାନେ ଗଜପତି ରାଜାଙ୍କ ସୈନ୍ୟ ବିଭାଗରେ ନିଯୁକ୍ତ ଥାଇ ନିଷ୍କର ଜମି ଓ ଅନେକ ସୁଖ ସୁବିଧା ଉପଭୋଗ କରୁଥିଲେ; କିନ୍ତୁ 'ମୋଗଲ-ଗୋଲ' ସମୟରେ ସେମାନେ ରାଜାନୁଗ୍ରହରୁ ବଞ୍ଚିତ ହେଲେ ଏବଂ ଅର୍ଥାଭାବ ହେତୁରୁ ସେମାନେ ଜଙ୍ଗଲରେ ଥାଇ ଡକାୟତି ଆରମ୍ଭ କରିଦେଲେ ।

(୧୬) ବିକଳ ହୋଇବେ ପରଜା—O.L./1199 ପୋଥିପାଠ ।

କେଶ (୧୭) ମୁକୁଳା କରି ଦେଇ । ରାଜବେ ପଛ(୧୮)ଘୂଞ୍ଚା ଦେଇ ।୧୭।
ପରଜା ନ ମାନିବେ ରାଜା । ଦେବତା ନ ପାଇବେ ପୂଜା(୧୯) ।୧୮।
କଳି ଯେ ଦ୍ୱନ୍ଦ୍ୱ ଉପୁଜିବ । ଓଡ଼ଶା (୨୦) ହେଲେ ନାଶଯିବ ।୧୯।
ପନ୍ଦର ସସ୍ର ଘୋଡ଼ା ଥାଇ । ସୃଷ୍ଟି(୨୧) ଯେ ପକାଇବେ ଦାହି ।୨୦।
ମର୍ତ୍ତିବେ ଜନ ଯେ ପରଜା । ସେମନେ ରାମଚନ୍ଦ୍ର ରାଜା ।୨୧।
ଖୋଜା ତାହାର ପୁତ୍ର ବେନ । ଦମନ ମୁଣ୍ଡ ନେବେ ହାଣି (୨୨) ।୨୨।
ସେ ବେନ ମୁଣ୍ଡ ଖୋଜା ନେଇ । ଦେଖିବ ଗଙ୍ଗା କଟକାଇ ।୨୩।
ସେମନ୍ତେ ରାମଚନ୍ଦ୍ର ଦେବ । ଦମନ ହାତେ ଧରା ହେବ ।୨୪।
ଆମ୍ଭେ ଯେ କ୍ଷେତ୍ର ଗୁଡ଼ଯିବୁ । ଦକ୍ଷିଣେ ଯାଇଣ ଲୁଚିବୁ (୨୩) ।୨୫।
ପୁଣି ଆଷାଢ଼ମାସଠାରେ । ଆମ୍ଭେ ଆସିବୁ କ୍ଷେତ୍ରବରେ (୨୪) ।୨୬।
ଚଢ଼ିବୁ ନନ୍ଦଘୋଷ ରଥ । କରିବୁ ଶ୍ରୀଗୁଣ୍ଡିଚ୍ଚା ଯାତ ।୨୭।
ଯାତ୍ରା ସାରିବୁ ବେଗେ ପୁଣ । ପଳାଇ ପଶିବୁ ଦକ୍ଷିଣ ।୨୮।

---

(୧୭) ମୋଗଲମାନଙ୍କ ଆକ୍ରମଣ ସହି ନପାରି ଓଡ଼ିଆ ପାଇକମାନେ କେଶବାସ ଅସମ୍ଭାଳ ହୋଇ ସଂଗ୍ରାମ ଭୂମି ତ୍ୟାଗ କରିଥିଲେ ।

(୧୮) ରାଜବେ ପଛକୁ ନଗୃହି—O.L /1199 ପୋଥିପାଠ ।

(୧୯) ଦେବତା ହୋଇବେ ଅପୂଜା—O.L./1199 ପୋଥିପାଠ ।

(୨୦) ଓଡ଼ିଶା କହିଲେ ସେତେବେଳେ ଖୋରଧା ଗଜପତିଙ୍କ ଅଧୀନରେ ଥିବା ଅଞ୍ଚଳକୁ ବୁଝାଉଥିଲା । ସେତେବେଳେ ଖୁରୁଧା ରାଜାଙ୍କ ଅଧୀନରେ ଆଧୁନିକ ପୁରୀ ଜିଲ୍ଲାଟି କେବଳ ମାତ୍ର ରହିଥିଲା; କିନ୍ତୁ ରଣପୁର, ଖଣ୍ଡପଡ଼ା, ଦଶପଲ୍ଲା ପ୍ରଭୃତି ପୂର୍ବତନ ଗଡ଼ଜାତ ରାଜ୍ୟ ତାଙ୍କ ଅଧିକାରଭୁକ୍ତ ନଥିଲା ।

(୨୧) ପୃଥ୍ୱୀ—O.L./1199 ପୋଥିପାଠ ।

(୨୨) ଖୋଜା ତାହାର ପାତ୍ର ବେନ । ଦମନ ନେବୁ ମୁଣ୍ଡହାଣି—O.L./413 ପୋଥିପାଠ ।

(୨୩) ରାଜା ରାମଚନ୍ଦ୍ର ଦେବ (ଦ୍ୱିତୀୟ)ଙ୍କ ସମୟରେ ଶ୍ରୀମନ୍ଦିର ଉପରେ ଆକ୍ରମଣ ହୁଅନ୍ତେ, ସେବକମାନେ ପ୍ରଭୁଙ୍କୁ ଚଉଦୋଳାରେ ବସାଇ ଚିଲିକା ପାରି କରାଇ ବାଣପୁରର ନଇରି ହରିଶ୍ୱର ମଣ୍ଡପରେ ବିଜେ କରାଇଲେ । ସେଠାରେ ମଧ୍ୟ ମୋଗଲ ଭୟ ହେବାରୁ ଖଲିକୋଟ ଅନ୍ତର୍ଗତ ଟିକିଲିଠାକୁ ମହାପ୍ରଭୁଙ୍କୁ ନିଆଯାଇଥିଲା । ସେହି ବର୍ଷ ମିଥୁନ ୩୦ ଦିନ ୨୯-୬-୧୭୩୩ ରେ ଦୋ’ ଆଷାଢ଼ ପଡ଼ିଥିବାରୁ ମହା-ପ୍ରଭୁଙ୍କର ନବକଳେବର ହୋଇଥିଲା । ରାମଚନ୍ଦ୍ର ଦେବ ଗୋପନରେ ଟିକାଲିରୁ ମହାପ୍ରଭୁଙ୍କୁ ଅଣାଇ ନବକଳେବର ଯାତ୍ରା ଭିଆଇ ଗୁଣ୍ଡିଚ୍ଚା ଯାତ୍ରା କରାଇଥିଲେ । ଏହି ଯାତ୍ରା ୨-୭-୧୭୩୩ ରେ ପଡ଼ିଥିଲା ।

(୨୪) ବିଜେ କରିବୁ କ୍ଷେତ୍ରବରେ—O.L./413 ପୋଥିପାଠ ।

ପାଞ୍ଚ ବରଷ ନୋହୁ ଯାତ । ହୋଇବ କଳି ଯେ ଭାରତ ।୨୯।
ଏଗାର ଅଙ୍କେ ରାଜା ହେବ । ଅଶ୍ୱ ଯେ ପୂରବେ ମେଦନୀ ।୩୦।
ପାଦାନ୍ତ ହସ୍ତ ଅଶ୍ୱଗଜ (୨୫) । କରିବେ ଅନେକ ଦହକ (୨୬) ।୩୧।
ଆସିବେ ଅପ୍ରମିତ ଘୋଡ଼ା । ହୋଇବେ ଖାରବର ଯୋଡ଼ା ।୩୨।
ଛେରରେ ଯେତେମେ ଛରକ (୨୭) । କାତର ଲାଗିବ ସଭଙ୍କେ ।୩୩।
ରାଜା ଯେ ଅଭ୍ୟାନ ହୋଇବେ । ସଂସାରେ କେହି ନ ଜାଣିବେ ।୩୪।
ସତ୍ୟ ଯେ ମଲା ବୋଲ୍ ଡାକ । ସଂସାରେ ପଡ଼ୁଥିବ ହାକ ।୩୫।
ତଦନ୍ତେ ସମର ହୋଇବ । ଅଲପଦନେ ନାଶ ଯିବ (୨୮) ।୩୬।
ଏକଇ ଦ୍ୱିଜ ଯେ ବ୍ରାହ୍ମଣ । ରାଜା ହୋଇବ ଛେରଦନ ।୩୭।
ପରମାନନ୍ଦ ମିଶ୍ର (ନାମ) ତା'ର । ରାଜା ହୋଇବ ଦନ ଛେର(୨୯) ।୩୮।
ଆମ୍ଭେ ଯେ ଫଗୁଣ ମାସର । ଜନ୍ମ ହୋଇବୁ ଯାଜପୁର ।୩୯।
ତୃତୀୟା ଶ୍ରବଣା ନକ୍ଷତ୍ର । ମଧ୍ୟରେ (୩୦) ବୃହସ୍ପତ ଥିବ ।୪୦।
ଧନୁ ରାଶିରେ ଚନ୍ଦ୍ର ଥିବ (୩୧) । ଶନଶ୍ଚରକୁ ଦୃଷ୍ଟି ଦେବ (୩୨) ।୪୧।
ରାହୁ ହସ୍ତାରେ ଥିବ ରହି । ଏମନ୍ତ ବେଳେ ଜନ୍ମହୋଇ(୩୩) ।୪୨।

---

(୨୫) ପାଦନ୍ତ ହସ୍ତ ଆସି ହେବ—O.L./413 ପୋଥିପାଠ ।

(୨୬) ଦହକ—ଦହନ କରିବା ଅର୍ଥରେ ଅର୍ଥାତ୍ ଘରଦ୍ୱାର ଲୁଣ୍ଠନରାଜ ଓ ପୋଡ଼ାପୋଡ଼ି ଅର୍ଥରେ ବ୍ୟବହୃତ ହୋଇଛି ।

(୨୭) ଛେରରେ ଯେତେମେ ଖରକ—O.L./1199 ପୋଥିପାଠ । ଏଠାରେ ଛେର ଅର୍ଥାତ୍ ରାମଚନ୍ଦ୍ର ଦେବଙ୍କ ୧୩ ଅଙ୍କ । ସନ ୧୬୩୬ ସାଲରେ ପୁଣି ମୋଗଲମାନଙ୍କ ଆକ୍ରମଣ ଭୟଙ୍କର ଭାବରେ ହେବ । ତେଣୁ ଲୋକମାନେ ଭୟଭୀତ ହୋଇ ଏଣେତେଣେ ପଳାୟନ କରିବେ ।

(୨୮) ୩୪,୩୫ ଓ ୩୬ ପଦ—O L./1199 ପୋଥିରେ ନାହିଁ ।

(୨୯) ଏହି ପଦଟି O.L./413 ପୋଥିରେ ନାହିଁ ।

(୩୦) ମାଘରେ—O L./1199 ପୋଥିପାଠ ।

(୩୧) ହେବ—O.L./1199 ପୋଥିପାଠ । (୩୨) ଥିବ—O.L./1199 ପୋଥିପାଠ ।

(୩୩) କବିଙ୍କ ପ୍ରଦତ୍ତ ରାଶି ନକ୍ଷତ୍ରର ଗଣନା ଜ୍ୟୋତିଷଶାସ୍ତ୍ର ମତେ ସମୀଚୀନ ହୁଏନାହିଁ, କାରଣ ଶ୍ରବଣା ନକ୍ଷତ୍ରରେ ଜନ୍ମ ହେଲେ ଧନୁଚନ୍ଦ୍ର ହେବନାହିଁ । ତଦ୍ବ୍ୟତୀତ ଫାଲ୍‌ଗୁନ ମାସ କୃଷ୍ଣପକ୍ଷ ହେଉ କିମ୍ବା ଶୁକ୍ଳପକ୍ଷ ହେଉ, ତୃତୀୟା ତିଥିରେ ପଡ଼ିବା ସମ୍ଭବ ନୁହେଁ ।

| | | |
|---|---|---|
| କଳଙ୍କୀ ରୂପ ଅବତାର | । ଜନ୍ମ ବଇତରଣୀ କୂଳ (୩୪) | ।୪୩। |
| ନଦଆ ଠାରୁ (୩୫) ସ୍ୱର୍ଣ ଘନ | । ଜନ୍ମ ମନୁଷ୍ୟ ଦେହ ଯେନ | ।୪୪। |
| ଶ୍ୟାମ ଜଳଦ ଦେହ ଶୋଭ (୩୬) | । କୋଟିଏ ଦନକର ପ୍ରଭ (୩୭) | ।୪୫। |
| ନଦଆ କୂଳେ ହୋଇ ଜନ୍ମ | । ଅନନ୍ତ ମିଶ୍ର ତା'ର ନାମ | ।୪୬। |
| ପଦ୍ମିନୀ (୩୮) ଗର୍ଭେ ହୋଇ ଜାତ | । ତାଙ୍କର କୁଳେ ହୋଇ ସୁତ | ।୪୭। |
| ଦକ୍ଷିଣେ ବଳଭଦ୍ର ଯାଇ | । ଧନୁ ମାସରେ ଜନ୍ମ ହୋଇ | ।୪୮। |
| କେତୁକେଶ୍ୱରେ (୩୯) ଗ୍ରାମଠାର | । ଜନ୍ମ ହୋଇବେ କଳେବର | ।୪୯। |
| ପଞ୍ଚମୀ ଯାଇ ଷଷ୍ଠୀ ମିଶେ | । କୃତକା କୃଷ୍ଣଚନ୍ଦ୍ର ପଶେ (୪୦) | ।୫୦। |
| ଅଶ୍ଳେଷାଠାରେ ବୃହସ୍ପତି (୪୧) | । ଅ.ଦତ୍ୟ ସୋମରେ ରହନ୍ତି | ।୫୧। |
| ଗ୍ରହୁ ଯେ ଶନଶ୍ଚର ଏଥି | । ନବମେ ବସିବେ ଅରଷ୍ଟି (୪୨) | ।୫୨। |
| ଏମନ୍ତ ବେଳେ ବ୍ରହ୍ମ ଜନ୍ମ | । ରୂପ ବିକାଶେ କୋଟି କାମ | ।୫୩। |
| ସପତଫଣୀ ଶିର ପରେ | । ଧବଳ ଶ୍ରୀରଙ୍ଗା ଅଧରେ (୪୩) | ।୫୪। |
| କୌମୁଦୀ ଧରଥିବେ କରେ | । କଳଙ୍କୀ ରୂପ ଅବତାରେ | ।୫୫। |
| ଛେଦଶ କୋଟି ଦେବେ ଯାଇ | । ପଶ୍ଚିମ ଦଗେ ଜନ୍ମ ହୋଇ | ।୫୬। |

---

(୩୪) କଳଙ୍କୀ ରୂପ ଯୁବତାର, ଜନ୍ମ ଯେ ବୈତ୍ରଣୀ କୂଳ O.L./1199 ପୋଥିପାଠ ।

(୩୫) ପଶ୍ଚିମବଙ୍ଗ ଅନ୍ତର୍ଗତ ଗଙ୍ଗା ତଟବର୍ତ୍ତୀ ନଦଆ ନୁହେଁ । ଯାଜପୁର ଅନ୍ତର୍ଗତ ବୈତରଣୀ ତଟବର୍ତ୍ତୀ ନଦଆ ନାମକ ଗ୍ରାମରେ କଳଙ୍କୀ ଅବତାର ଅବତୀର୍ଣ୍ଣ ହୋଇଥିଲେ ।

(୩୬) ଶ୍ୟାମ ଜଳଦ ମେଘ ଶୋଭ—O.L./413 ପୋଥିପାଠ ।

(୩୭) କୋଟିଏ ଦନକର ଶୋଭ—O.L./1199 ପୋଥିପାଠ ।

(୩୮) ପଦ୍ମିନୀ ହେବ ଅ.ମ୍ଭ ମାତ । ତା'ର କୋଳରେ ହେବୁ ଜାତ—O.L./1199 ପୋଥିପାଠ ।

(୩୯) କେଉଙ୍କ ଗ୍ରାମଶ୍ୱର ଠାରେ—O.L./413 ପୋଥିପାଠ ।

(୪୦) ପଞ୍ଚମୀ ଯାଇ ଷଠୀ ପଶେ । —O.L./413 ପୋଥିପାଠ । କୃତକା ମୀନଚନ୍ଦ୍ର— O L./1199 ପୋଥିପାଠ ।

(୪୧) ଅଶ୍ଳେଷା ରହେ ବୃହସ୍ପତ—O.L./413 ପୋଥିପାଠ ।

(୪୨) ପଞ୍ଚମୀ ଯାଇ ଷଷ୍ଠୀ ମିଶେ । କୃତକା ମୀନ ଚନ୍ଦ୍ର ବସେ । ଅଶ୍ଳେଷା ଠାରେ ବୃହସ୍ପତ । ଗ୍ରହୁ ଯେ ଶନଶ୍ଚର କୁଷ୍ଟି । ଜନମେ ନମିଷେ ଅରଷ୍ଟି । ଆଦତ୍ୟ ସୋମସର ସ୍ଥିତ । —O.L./1199

(୪୩) ଧଳା ଶ୍ରୀଅଙ୍ଗ କୁସୁମରେ—O.L./413 ପୋଥିପାଠ ।

ବ୍ରହ୍ମା ଯେ କୁବେର ବରୁଣ । ଅଷ୍ଟ ଯେ ବସୁ ଗ୍ରହଗଣ (୪୪) ।୫୭।
ରୁଦ୍ର ଯେ ମେଘ ଅଷ୍ଟରୁଣ । ପବନ ରୂପ ସତାଇଶ (୪୫) ।୫୮।
ତେତିଶ କୋଟି ସୁର ଦେବେ । ପଶ୍ଚିମେ ଜନମ ହୋଇବେ(୪୬) ।୫୯।
ଚଉଦ (୪୭) ଅଙ୍କ ପରବେଶ । ସଙ୍ଗେ ବାହାର ମଧୁମାସ (୪୮) ।୬୦।
ତେତିଶ କୋଟି ଦେବ ସଙ୍ଗେ । ଚଣ୍ଡୀ ଚାମୁଣ୍ଡା ନାନା(୪୯)ରଙ୍ଗେ ।୬୧।
ପଚାଶ କୋଟି ଯେ ଚାମୁଣ୍ଡା । ଖପର ଧରିଥିବେ ଝଣ୍ଡା ।୬୨।
ଚଣ୍ଡୀ ଯେ ଚଉରାଶୀ ଲକ୍ଷ । ପିଶାଚ (୫୦)ବଳ ଯେ ଅସଂଖ୍ୟ ।୬୩।
ଡାକେନୀ ବଣାଶସ୍ତେ ଖର୍ବ । ରଣ ରଙ୍ଗରେ ମତ୍ତ (୫୧) ଗର୍ବ ।୬୪।
ଗୋସାଣୀ ଛୟାଣୋଇ ଶତ । କାଳିକା ବାଆନ ମର୍ତ୍ତ୍ୟ ତ (୫୨) ।୬୫।
ଭୂତ ଯେ ଥିବେ ପାଞ୍ଚକୋଟି (୫୩) । ପ୍ରେତ ସହସ୍ର ଘନ କୋଟି ।୬୬।
ନବ କୋଟି ଯେ କାତ୍ୟାୟନୀ । ସଙ୍ଗତେ ଚଉଷଠି ଯୋଗିନୀ ।୬୭।
ଦୁର୍ଗା ଖାଇବେ ଆଠ ସସ୍ର । କାଳିକା କରିବେ ଯେ(୫୪)ଗ୍ରାସ ।୬୮।
ତେଇଶି (୫୫) ଶତ ଯେ କାଳିକା । ମଙ୍ଗଳା ଅର୍ବୁଦେକ ଲେଖା ।୬୯।
ସାରଳା ସତର ଯେ ଶତ । ବିରଜା(୫୬) ବାର ଯେ ଅର୍ବୁଦ ।୭୦।

---

(୪୪) ବ୍ରହ୍ମା ଯେ ବରୁଣ କୁବେର । ସ୍ରଷ୍ଟ ବସୁରେ ଶଙ୍କର—O.L./1199 ପୋଥିପାଠ ।

(୪୫) ଜନ୍ମ ନୈର୍‌ତ ସତାଇଶ—O.L./413 ପୋଥିପାଠ ।

(୪୬) ତେତିଶ କୋଟି ସର୍ବ ଦେବେ । ପଞ୍ଚମେ ଜନ୍ମ ହୋଇବେ—O.L./413 ପୋଥିପାଠ । (୪୭) ଚବିଶ O.L./413—ପୋଥିପାଠ ।

(୪୮) ସର୍ବଦା ରହେ ମଧୁମାସ—O.L./1199 ପୋଥିପାଠ ।

(୪୯) ରଣରଙ୍ଗେ—O.L./1199 ପୋଥିପାଠ ।

(୫୦) ପିଶୁଣ—ଉଭୟ ପୋଥିର ପାଠ ।

(୫୧) ନାଶିବେ ମନୁଷ୍ୟଙ୍କ ଗର୍ବ—O.L./413 ପୋଥିପାଠ ।

(୫୨) ମର୍ତ୍ତ—ଉଭୟ ପୋଥିପାଠ । (୫୩) ଗୋଟି—O.L./413 ପୋଥିପାଠ ।

(୫୪) ଦୁର୍ଗା ଖାଇବେ ପାଞ୍ଚ ଶତ । କାଳିକା କରିବେ ନପାତ । O.L./413 ପୋଥିପାଠ ।

(୫୫) ତେଇଶି ସହସ୍ର—O.L./1199 ପୋଥିପାଠ ।

(୫୬) ବିରଜା—O.L./413 ପୋଥିପାଠ ।

ଦ୍ୱାପର (୬୭) ଯୁଗେ ପୂରନାହିଁ । କଳି ଯୁଗକୁ ଅଛି ଗୃଧି ।୭୧।
ବାକ ତା ଚଉଦେ (୬୮) ପୂରବ । ଆହୁର କଛୁ କଛୁ ଥିବ ।୭୨।
ଇଛା (୬୯) ପୁରକୁ କଛୁ ଦେଇ । ବାପେଲୀ ବାର ଶତ ଖାଇ ।୭୩।
ଘୃଚକା (୭୦) ଘୁଳଶି ସହସ୍ର । ଚଉଦ (୭୧) ଅଙ୍କେ କର ଗ୍ରାସ ।୭୪।
ମଣି (୭୨) ନାଗକୁ ଅବୁର୍ଦ୍ଦେକ । ସଙ୍ଗେଣ ଥିବେ ଯେ ଅନେକ ।୭୫।
ଭଗବତୀଙ୍କି ଯେ ବହୁତ । ଖାଇବେ ଏଗାର ଯେ ଶତ ।୭୬।
ବରୁଣାଇକ (୭୩) ବାର ଶସ୍ତେ । କରୁଣାଇ(୭୪)କ ଯେ କୋଟିସ୍ତେ ।୭୭।
ଦୁର୍ଗା ଖାଇବେ ଦଶ ଶତ । ପରଜା କରିବେ (୭୫) ନପାତ ।୭୮।
ମେହେର ଚଣ୍ଡୀ ଅଠରଲକ୍ଷ । ରାମଚଣ୍ଡୀ ଯେ ଆଠ ଲକ୍ଷ ।୭୯।
ଛଡ଼ ଅବୁ ଦ ରାମଚଣ୍ଡୀ । ଭୟଙ୍କାରରେ ସର୍ବେ ମଣ୍ଡି ।୮୦।
ଅଠରନଳା ଅମାବଇ । ଖାଇବେ ନବ ଖର୍ବ ଦୁଇ ।୮୧।

---

(୬୭) ଦ୍ୱାପର ଯୁଗରେ ହୋଇଥିବା ଭୟଙ୍କର କୁରୁକ୍ଷେତ୍ର ଯୁଦ୍ଧରେ ଯେଉଁ ନରସଂହାର ହୋଇଥିଲା, ସେଥିରେ ରକ୍ତମାଂସ ଭକ୍ଷଣ କରି ବିରଜାଙ୍କ ମନ ତୃପ୍ତ ହୋଇନାହିଁ । ତେଣୁ କଳିଯୁଗରେ ସେ ଉଦ୍ଦେଶ୍ୟ ପୂରଣ ହେବ ବୋଲି କବି ସୂଚନା ଦେଇଛନ୍ତି ।

(୬୮) ଚଉଦ—O.L./413 ପୋଥିପାଠ ।

(୬୯) ଏଠାରେ 'ଇଛାପୁର' କୌଣସି ନାମବାଚକ ଶବ୍ଦ ନୁହେଁ । ଅଭିଳାଷ ପୂରଣ ଅର୍ଥରେ ଇଛାପୁର ବ୍ୟବହାର କରାଯାଇଛି ।

(୭୦) ବାଙ୍କୀ ଅନ୍ତର୍ଗତ ଚର୍ଚ୍ଚିକା ଦେବୀଙ୍କୁ ଘୃଚକା ବା ଘୃଚକାଇ ବୋଲି ଲୋକମାନେ କହନ୍ତି । (୭୧) ଚଉଦ—O.L./413 ପୋଥିପାଠ ।

(୭୨) ରଣପୁର ଅନ୍ତର୍ଗତ ମଣିନାଗ ପର୍ବତ ପ୍ରାଚୀନ କାଳରୁ ଏକ ଆଧ୍ୟାତ୍ମିକ ମାହାତ୍ମ୍ୟ ରକ୍ଷା କରିଆସିଛି । ଏହି ପର୍ବତର ପ୍ରାଧାନ୍ୟ ସମ୍ବନ୍ଧରେ ଅଚ୍ୟୁତାନନ୍ଦ, ବିଷ୍ଣୁଦାସ, ପ୍ରଭୃତି ଲେଖକମାନେ ସ୍ୱୀକାର କରିଛନ୍ତି ।

(୭୩) ଜଟଣୀ ଅନ୍ତର୍ଗତ ବରୁଣେଇ ପାହାଡ଼ରେ ଥିବା ଦେବୀଙ୍କୁ ବରୁଣାଇ ବୋଲି କୁହାଯାଏ । ସେ ଗଜପତି ରାଜାଙ୍କର ଦୁର୍ଗେଶ୍ୱରୀ ଥିବାର ଜଣାଯାଏ ।

(୭୪) ବରୁଣେଇ ପାହାଡ଼ର ପାଦଦେଶରେ ଗୋଟିଏ ମନ୍ଦିରରେ ବରୁଣାଇ ଓ କରୁଣାଇ ନାମ୍ନୀ ଦେବୀମୂର୍ତ୍ତି ପ୍ରତିଷ୍ଠିତ ହୋଇଛନ୍ତି । ଉଭୟ ଖୋର୍ଦ୍ଧା ରାଜବଂଶର ଅଧିଷ୍ଠାତ୍ରୀ ଦେବୀ ଥିବାର ଜଣାଯାଏ ।

(୭୫) ଦୁର୍ଗାଦେବୀଙ୍କ ଦଶ ଶତ । ଦେବୀତ ଯେ ମରୁତ । O.L./1199 ପୋଥିପାଠ ।

ଧନ ସହସ୍ର ଯାଗୁଲାଇ । ଅନେକ ଖାଇବେ ବାଘାଏ ।୮୨।
ବାର ସହସ୍ର ଗ୍ରସ୍ତା ମାସ୍ତା । ଗ୍ଭର ଅବୁଦ ମହାମାସ୍ତା ।୮୩।
କୋଡାମ ଚଣ୍ଡୀ ସସ୍ର ଗ୍ଭର । ପୃଥ୍ୱୀର ଦେବା ଦେଖା ପୂର । ୮୪।
ଗ୍ରାମ ଗୋଟିକେ ଯେ ଦେବତା । ଏ ଭୂମି ଛଲେ ଯେ ବା ଛନ୍ତ ।୮୫।
ଥାବର କାଷ୍ଠ ପତଙ୍ଗାଦ । ସବୁ ଅଙ୍ଗରେ ଥିବେ ଭେଦ ।୮୬।
ଆନପଥଙ୍କି ଆନ ଦେଇ । ଗ୍ରାମଦେବତା ପୁଣ (୬୬) ଖାଇ ।୮୭।
ଆଉ ଯେତେକ ପୁଣ ଥିବେ । ଶତ ସହସ୍ର ବାଣ୍ଟି ନେବେ (୬୭) ।୮୮।
କେ ଲକ୍ଷ କୋଟି ଖବ (୬୮) ପୂର । ବାରଘା ବାର ବାସ୍ତୋଗ୍ଭ (୬୯) ।୮୯।
ମଙ୍ଗଳା ତେର ପାଆ ନେଇ । ମହାମାସ୍ତା ଯେ କୋଶ(୭୦)ଦୁଇ ।୯୦।
ସାରଳା ସତର ଯେ ପାଆ । ବରଜା ସ୍ଥଳୀ ବାର ପାଆ (୭୧) ।୯୧।
ବାଷଲୀ ବାର ପାଆ ନେଇ । ଗ୍ଭଚକା ଗ୍ଭର କୋଶ ଦୁଇ ।୯୨।
ଏହି ପ୍ରକାରେ ନେବେ ବାଣ୍ଟି । କାଠ କୁଠାର ଯେହ୍ନ କାଟି ।୯୩।
ବଲୁଆ ବାର ସସ୍ର ନେବେ । ବ୍ୟାଘ୍ର ଯେ ଶାର୍ଦ୍ଦୂଳ ଖାଇବେ ।୯୪।
ସର୍ପ (୭୨) ସତର ସସ୍ର ଜାଣ । ଶାଗୁଣା(୭୩) ତେର ସସ୍ର ଜାଣ ।୯୫।
ଶ୍ୱାନ ଯେ ସାତ ଶତ ଖାଇ । ବଣଆ (୭୪) ନେବେ ଶତ ଦୁଇ ।୯୬।

---

(୬୬) ୮୯ ପଦଠାରୁ ୯୭ ପଦ ପର୍ଯ୍ୟନ୍ତ ନ' ପଦ O.L./1199 ପୋଥିରେ ନାହିଁ ।

(୬୭) ଆଉ ଯେତେକ ପୁଣି ଥିବେ । ଶତ ସହସ୍ର ବାସ୍ତୁ ନେବେ । O.L./1199 ପୋଥିପାଠ । (୬୮) କେ ଲେଖି କୋଟି ଖର୍ବୀଶ୍ୱର O.L./1199ପୋଥିପାଠ ।

(୬୯) ବାଗହ ବାବସ୍ଥଳୀ ସ୍ଥଳୀ O.L./1199 ପୋଥିପାଠ ।

(୭୦) ମଙ୍ଗଳା ତେର ପଦ୍ମ ନେଇ । ମାତା ମାସ୍ତାକୁ କୋଶ ଦୁଇ । O.L./1199 ପୋଥିପାଠ । ମଙ୍ଗଳା ଦେଖା (ଖୁବ୍ ସମ୍ଭବତଃ କାକଟ ପୁର ମଙ୍ଗଳା) ନିଜ ଅଞ୍ଚଳଠାରୁ ତେର ପା' ଅର୍ଥାତ୍ ଧନକୋଶ ଏକ ପା' ଅଞ୍ଚଳ ଓ ମହାମାସ୍ତା ଦୁଇ କୋଶ ଅଞ୍ଚଳ ମ୍ଳେଚ୍ଛ ସଂହାର କରବେ ବୋଲି ସୂଚନା ଦେଇଛନ୍ତି ।

(୭୧) ପାଆ ସ୍ଥାନରେ O.L./1199 ପୋଥିରେ ପାଶା ଅଛି ।

(୭୨) ସର୍ଗ O.L./1199 ପୋଥିପାଠ ।

(୭୩) O.L./1199ରେ ଶ୍ୱାନ ଯେ ଖାଇବେ ମରଣ ଓ O.L./413ରେ ଶୃର୍ଗୁଣ (ଶାଗୁଣା ଅର୍ଥରେ) ବୋଲି ପାଠ ଅଛି ।

(୭୪) ଗୋଟିଏ ପ୍ରକାର ବଣୁଆ କୁକୁର ।

ତେର ଅଙ୍କରୁ ଯେ ଚଉଦ । ହୋଇବ ମହାଘୋର ଯୁଦ୍ଧ(୭୫) ।୯୭।
ଟିକର ଗୋହିରୀ ଆରମ୍ଭ । ବ୍ରହ୍ମା ପୋତିଛନ୍ତି ତହିଁ ସ୍ତମ୍ଭ (୭୬) ।୯୮।
ଗୁରୁଶିଷ୍ୟଙ୍କ ହେବେ ଶତ୍ରୁ । ଖଣ୍ଡି ଲୁଚବେ ଘୋଡ଼ା ଟାପୁ ।୯୯।
ପଦରେ ବାଜିବ ତରଜା । ରୁଣ୍ଡ ହୋଇବେ ଲକ୍ଷେ ରାଜା(୭୭)।୧୦୦।
ଶୁଣି ହୋଇଲେ ମନେ ତୋଷ । ଭଣିଲେ ବାଲିଗାଁ ଯେ ଦାସ ।୧୦୧।
ଏ (୭୮) ଅଧ୍ୟା ଚେତ୍ୟାନବେ ପଦ । କେ ଜାଣି ପାରିବ ଆପାଦ ।୧୦୨।
ଯେତେକ କଲିଟି ଯେ ଉଦେ । ମିଛୁଆ ଅଛୁ ଭୂମ୍ଭ ପାଦେ ।୧୦୩।

ଇତି ଶ୍ରୀ କଳି ଭାରଥେ (୭୯) ବାଲିଗାଁ ଦାସ ସମ୍ବାଦେ
ଆଗତ ଭବିଷ୍ୟ ଶ୍ରୀକୃଷ୍ଣଜନ୍ମାଦି ନାମ ତୃତୀୟ ଅଧ୍ୟାୟ । ☐☐☐

---

(୭୫) ତେର ଅଙ୍କରୁ ଯେ ଚବଶ । ହୋଇବ ମହାଘୋର ନାଶ । O.L./413 ପୋଥିପାଠ ।

(୭୬) ଯାଜପୁର ନିକଟବର୍ତ୍ତୀ ବୈତରଣୀତଟରେ ଗୋହିରୀ ଟିକର ନାମକ ସ୍ଥାନ ବିଦ୍ୟମାନ । କଥିତ ଅଛି, ଓଡ଼ିଶାର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦ ଦେବ ସେହିଠାରେ କଳାପାହାଡ଼ ନାମକ ଦୁର୍ଦ୍ଦାନ୍ତ ଯବନ ସହିତ ସଂଗ୍ରାମ କରି ପ୍ରାଣ ହରାଇଥିଲେ । ତାହାର ଅନତିଦୂରରେ ସୋମବଂଶ ରାଜା ଯଯାତିକେଶରୀଙ୍କ ଅମଳରୁ ଗୋଟିଏ ଯଜ୍ଞସ୍ତମ୍ଭ ରହିଛି । ସେହିଠାରୁ ମ୍ଳେଚ୍ଛସଂହାର ଆରମ୍ଭ ହେବ ବୋଲି କବି ସୂଚନା ଦେଇଛନ୍ତି ।

(୭୭) ରାମଚନ୍ଦ୍ର ଦେବ (ଦ୍ୱିତୀୟ)ଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଭାଗୀରଥୀ କୁମାର ଓ ପଟିଆ ପଦ୍ମନାଭ ଦେବ ଉଭୟଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ସଂଘଟିତ ହୋଇଥିଲା । ଏଥିରେ ସୁବାଦାର ମୁର୍ଶିଦ୍ କୁଲି ଖାଁ ବୀରକେଶରୀ ଦେବଙ୍କୁ ସମର୍ଥନ କରିଥିଲେ । ବୀର-କେଶରୀ ଦେବ ମଧ୍ୟ ଘୁମୁସର, ନୟାଗଡ଼, ଖଣ୍ଡପଡ଼ା, ଅନୁଗୁଳ ପ୍ରଭୃତି ରାଜାମାନଙ୍କ ସମର୍ଥନ ଲାଭକରିଥିଲେ । ଏହି ଘଟଣାକୁ ଲକ୍ଷ୍ୟକରି ବୋଧହୁଏ କବି 'ରୁଣ୍ଡ ହୋଇବେ ଲକ୍ଷେ ରାଜା' ବୋଲି ବର୍ଣ୍ଣନା କରିଛନ୍ତି ।

(୭୮) ଶେଷ ଦୁଇଟି ପଦ O.L./413 ପୋଥିରେ ନାହିଁ । ମଝିରେ ମଝିରେ କେତୋଟି ପଦ O.L./493 ପୋଥିରେ ଅଧିକ ଥିବାରୁ ପଦସଂଖ୍ୟା O.L./1199 ପୋଥି ଅନୁସାରେ ୯୩ ନହୋଇ ୧୦୩ ହେଉଛି ।

(୭୯) ଇତି ଶ୍ରୀମଦ୍ଭାଗବତେ O.L./1199 ପୋଥିପାଠ ।

# ଚତୁର୍ଥ ଅଧ୍ୟାୟ

ବାଲଗାଁ ଦାସ ଏହା ଶୁଣି । ଛୁଇଁଲେ ଶ୍ରବଣ ଧରଣୀ (୧) ।୧।
ବୋଲନ୍ତି ଆହେ (୨) ଜଗନ୍ନାଥ । ବଢଦେ(୩) ହେବ ଏତେ କୃତ୍ୟ ।୨।
ବୋଇଲେ ନେବୁ (୪) ଜନ୍ମ ଧନ । ସଙ୍ଗରେ ସାଧିବୁ ମେଦନୀ (୫) ।୩।
କେ କେଉଁଠାରେ ହେବ ଯୁଦ୍ଧ । କେତେ ଦନରେ ହେବ ସାଧ (୬) ।୪।
ଭାରତ ଭୂମି କେଉଁଠାରେ । କେ କେ ମଶବେ ଚଢଦରେ (୭) ।୫।
କେତେ ଆୟୁତ କେତେ ସ୍ଥଳୀ । ସଂଗ୍ରାମେ(୮) ଥିବେ କେତେ ମିଳି ।୬।
ଠିକେ (୯) କହିବ ଭାବଗ୍ରାହୀ । ଶୁଣି ବକଳ ହେଲା ଦେହୀ ।୭।
ଏ କଳିଯୁଗ ଅନ୍ୟାୟର । କହୁଛି (୧୦) କଲେ ଦାମୋଦର ।୮।
ବାଲଗାଁ ଦାସଠାରୁ ଶୁଣି । କହନ୍ତି ପ୍ରଭୁ ଚକ୍ରପାଣି ।୯।
ପ୍ରଭୁ ବୋଲନ୍ତି ଶୁଣ ଦାସ । କଳରେ ଯେତେ ଯିବେ ନାଶ ।୧୦।
ପ୍ରଥମେ ଏକ ଯେ ଅସଂଖ୍ୟ । ଦ୍ୱିତୀୟେ ଦୁର୍ଗା କର ଭକ୍ଷ ।୧୧।
ତୃତୀୟେ ଜନମ ନିବଧି । ଚତୁର୍ଥେ (୧୧) ଅଶ୍ୱଚଢ ବଧି ।୧୨।

---

(୧) ସଂସ୍କୃତର ପ୍ରବଚନ—'ଭୂମିଂ ସ୍ପୃଷ୍ଟ୍ୱା କର୍ଣ୍ଣୌ ସ୍ପୃଶନ୍ତ' ଅନୁସାରେ ମ୍ଳେଚ୍ଛସଂହାର ସମ୍ବନ୍ଧରେ ଭୟାବହ ସମ୍ବାଦ ଶୁଣି ବାଲଗାଁ ଦାସ ଭୟଭୀତ ହୋଇ ପଡ଼ିଥିଲେ । ତେଣୁ ସେ ଭୂମି ସ୍ପର୍ଶକରି କର୍ଣ୍ଣ ସ୍ପର୍ଶକଲେ ।

(୨) ଶୁଣ O.L./413 ପୋଥିପାଠ । (୩) ତବଶେ O.L./413 ପୋଥିପାଠ ।

(୪) ହେବ O.L./413 ପୋଥିପାଠ । (୫) ଜଗତ ସାଧବ O.L./413 ପୋଥିପାଠ ।

(୬) ଯୁଦ୍ଧ O.L./1199 ପୋଥିପାଠ । (୭) ତବଶରେ O.L./413 ପୋଥିପାଠ ।

(୮) ପଦନ O.L./413 ପୋଥିପାଠ । (୯) ଠିକ୍ କରିବ O.L./413 ପୋଥିପାଠ । (୧୦) ଏ ଖେଳ ହେବ ଦାମୋଦର O.L./1199 ପୋଥିପାଠ ।

(୧୧) ଚତଥେ ଅଶ୍ୱ ଚଢ଼ି ସାଜ O.L./1199 ପୋଥିପାଠ ।

ପଞ୍ଚମେ ଶାଖା କର ସଙ୍ଗେ (୧୨) । ଘୋର ସଂଗ୍ରାମ ରଣ ରଙ୍ଗେ ।୧୩।
ଡଲ୍ଲୀରୁ (୧୩) କଳଙ୍ଗ ଦକ୍ଷିଣ । ଲଗିବ ମହାଘୋର ରଣ ।୧୪।
କାକ (୧୪) ଶୃଗାଳ ଘୋର ରଡ଼ି । କାନ୍ତାଣୀ(୧୫) ଚଣ୍ଡୀ ଶୂନ୍ୟେ ଉଡ଼ି ।୧୫।
ଡାକନୀ ମହା ଘୋର ଡାକ । ଆକାଶେ ପଡ଼ିବ ଚମକ ।୧୬।
ପତଙ୍ଗ ପ୍ରାୟେ ଉଡ଼ୁଥିବେ । ପାପୀ ଜନଙ୍କୁ ମାରନେବେ ।୧୭।
କାକ ଗୃଧୂନୀ (୧୬) କର କ୍ରୀଡ଼ା । ଅସଂଖ୍ୟ ପଡ଼ୁଥିବେ ମଡ଼ା ।୧୮।
କାଳକା ଧରଥିବେ ଖଣ୍ଡା । ସଂଗତେ ଚଣ୍ଡୀ ଯେ ଚାମୁଣ୍ଡା ।୧୯।
କାଢରେ ଖାଉଥିବେ କାଟି । ଜୀବନ୍ତା କାଟିଦେବେ ତର୍ଣ୍ଣି ।୨୦।
ପାପୀ ଲୋକଙ୍କୁ ରଣଭଣ । ଦୁର୍ଗା ମଙ୍ଗଳା ନେବେ ପ୍ରାଣ ।୨୧।
ଯେ କରଥିବେ ବ୍ରହ୍ମହତ୍ୟା । ଝୁଣି(୧୭) ଘେନବେ ତାର ଚତା ।୨୨।
ଯେ ପରଦାର କରଥିବ । ତାହାକୁ କାହିଁ ନାହିଁ ଠାବ ।୨୩।
ଉର (୧୮) ଉପରେ ତା'ର ବସି । ଶୋଣିତ ପିଉଥିବେ(୧୯) ଶୋଷି ।୨୪।

---

(୧୨) ପଞ୍ଚମେ ପଞ୍ଚଦାସ ସଙ୍ଗେ O.L./413 ପୋଥିପାଠ ।

(୧୩) ଦଲ୍ଲୀକୁ ଡଲ୍ଲୀ ବୋଲି ଓଡ଼ିଆରେ ପ୍ରଚଳନ ଥିବାର ଦେଖାଯାଏ । ବଙ୍ଗ ସୁଲତାନ-ମାନଙ୍କ ପ୍ରଭୁତ୍ୱ କ୍ଷୁଣ୍ଣକର ଆକବର ବାଦଶାହ ବଙ୍ଗ-ବିହାର-ଓଡ଼ିଶା ଉପରେ ନଜର ଆଧିପତ୍ୟ ବିସ୍ତାର କରଥିଲେ । ସେହି ପ୍ରସଙ୍ଗରେ ମହାଘୋର ରଣ ସଂଘଟିତ ହୋଇଥିଲା । କବି ବୋଧହୁଏ ସେହି ପ୍ରସଙ୍ଗର ସୂଚନା ଦେଇ ଏଠାରେ ଲେଖିଛନ୍ତି । (୧୪) କାକ O.L./1199 ପୋଥିପାଠ ।

(୧୫) 'କାନ୍ତାଣୀ' କାତ୍ୟାୟିନୀ ଶବ୍ଦର ଦେଶଜ ପ୍ରୟୋଗ । ୬୪ ଯୋଗିନୀଙ୍କର ଦଅଷ୍ଟ ଶୀର୍ଷସ୍ଥାନୀୟା କାତ୍ୟାୟିନୀ ରହିଥାନ୍ତି । ପ୍ରସିଦ୍ଧ ତାନ୍ତ୍ରିକ ପୀଠ ହୀରପୁର ୬୪ଯୋଗିନୀ ମନ୍ଦିରର ପ୍ରାଚୀରର ବାହାରପଟେ ନବକୋଟି କାତ୍ୟାୟିନୀଙ୍କ ମୂର୍ତ୍ତି ରହିଛି । ସେମାନଙ୍କୁ ଯୋଗିନୀମାନଙ୍କର ଅଙ୍ଗରକ୍ଷିକା ହିସାବରେ ପୂଜା କରାଯାଏ ।

(୧୬) ଗୃଧୂନୀ--ଶାଗୁଣୀ ।

(୧୭) O.L./1199 ଶ୍ରୋଣି ଓ O.L./413 ରେ ଶ୍ରେଣି ରହିଛି, କିନ୍ତୁ ଉଭୟ ଶବ୍ଦର ଅର୍ଥ ଏଠାରେ ଯୁକ୍ତିସଂଗତ ହେଉନାହିଁ । ବ୍ରହ୍ମହତ୍ୟାକାରୀଙ୍କୁ ବିଦାରଣ କରି ତା ରକ୍ତରେ ଚତା ଘେନିବା ଉଦ୍ଦେଶ୍ୟରେ କବି ବୋଧହୁଏ ପଦରଚନା କରଥିଲେ; କିନ୍ତୁ ଲେଖନକାରଙ୍କ ପ୍ରମାଦରୁ ତାହା କଦର୍ଥ ହୋଇଛି ।

(୧୮) ନଜ ତର୍ଣ୍ଣିରେ ତା'ର ବସି O.L./313 ପୋଥିପାଠ ।

(୧୯) ଖାଉଥିବେ O.L./1199 ପୋଥିପାଠ ।

ଓଣ୍ଟି କାଟିବେ କାଢ ଦେନ । ମାଏଁସ (୨୦) ପକାଇବ ଛେନ (୨୧)
ଯେ କରଥିବ ଜନ୍ତୁବଧ । ଦେବୀଙ୍କି (୨୧କ) ହୋଇ ସେ ଔଷଧ
ତାହାର ବେନ ପାଦ ଧର । ଚରବେ ବେନ ଫାଳକର ।୨୭।
ବାଳେକ ମାରଥିବ ଯେହୁ । ତାକୁ ଘୋଟିବ କାଳଗ୍ରହୁ ।୨୮।
ଯେ ଗୋରୁ ହତ୍ୟା କରଥିବ । ବ୍ୟାଘ୍ର ମୁଖରେ ସେ ପଡ଼ିବ(୨୨) ।୨୯।
ଯେ ସ୍ତ୍ରିହତ୍ୟା ଥିବ କର (୨୩) । ଦୁର୍ଗା ଖାଇବେ ତାକୁ ଧର (୨୪) ।୩୦।
ଯେ ପର ଦ୍ରବ୍ୟ ନେଇଥିବ । ତାହାକୁ ବାଘ୍ରେ ଖାଇବ ।୩୧।
ଯେ ନ ମାନିବେ ଗଜପତି (୨୫) । ତାଙ୍କୁ ଖାଇବେ ଥାନପତି ।୩୨।
ପିତାଙ୍କୁ (୨୬) ନ ମାନଲେ ପୁତ୍ର । ପଶୁମୁଖରେ ହେବେ ହତ ।୩୩।
ଗୁରୁଙ୍କୁ (୨୭) ନ ମାନଲେ ଶିଷ୍ୟ । ବାଘେଲୀ(୨୮)କରେ ତାଙ୍କୁ ଗ୍ରାସ ।୩୪।
ଯେ ଯେଉଁ ପାପ କରଥିବ (୨୯) । ଏହି ପ୍ରକାରେ ନାଶ ଯିବ ।୩୫।
ଶୁଣି ପାପୀଙ୍କି ହେବ କେତୁ । ଏ ଅଟେ ବ୍ରହ୍ମଜ୍ଞାନ ହେତୁ ।୩୬।
ଅବଶ୍ୟ ହେବ ଘୋର ରଣ । କହନ୍ତି ଦେବ ନାରାୟଣ ।୩୭।
ମହନା (୩୦) ମୁଗଲ ଆସିବ । ଏଗାର ସସ୍ର ଘୋଡ଼ା ଥିବ ।୩୮।

---

(୨୦) ମାଂସର ଦେଶଜ ପ୍ରୟୋଗ ।
(୨୧) ଛିନ୍ନ O.L./413 ପୋଥିପାଠ । ଛେଦନ ଶବ୍ଦର ଅପଭ୍ରଂଶ ।
(୨୧କ) ଦେବ ସେ O.L./1199 ପୋଥିପାଠ ।
(୨୨) ସେହୁ ଯିବ O.L./1199 ପୋଥିପାଠ ।
(୨୩) କରଥିବ O L./413 ପୋଥିପାଠ ।
(୨୪) ଦୁର୍ଗା ମୁଖରେ ସେ ପଡ଼ିବ O.L./4113 ପୋଥିପାଠ ।
(୨୫) ଗଜପତି କହିଲେ ଓଡ଼ିଶାରେ ସାଧାରଣତଃ ରାଜାଙ୍କୁ ବୁଝାଏ ଏବଂ ଓଡ଼ିଶାର ଗଜପତି ଠାକୁରରାଜା ନାମରେ ପ୍ରଖ୍ୟାତ ଓ ଚଳନ୍ତି ବିଷ୍ଣୁରୂପେ ପ୍ରସିଦ୍ଧିଲାଭ କରିଥିବାରୁ ଓଡ଼ିଆ ସମାଜରେ ତାଙ୍କର ସ୍ଥାନ ଦେବତୁଲ୍ୟ ।
(୨୬) ପିତା ଯେ ନ ମାନିବେ ପୁତ୍ର । O.L./1199 ପୋଥିପାଠ ।
(୨୭) ଯେ ଗୁରୁ ନ ମାନିବେ ଶିଷ୍ୟ O.L./1199 ପୋଥିପାଠ ।
(୨୮) ବାଘେଲୀଙ୍କର ହେବ ଗ୍ରାସ । O L./1199 ପୋଥିପାଠ ।
(୨୯) ଯେ ଜନ ପାପ କରଥିବେ । O.L./413 ପୋଥିପାଠ ।
(୩୦) ମଉନ ବ୍ରତେ ଯେ ଆସିବେ । O.L./413 ପୋଥିପାଠ । O.L /1189 'ମହନା ମୋଗଲ' ଶବ୍ଦକୁ ବିଭିନ୍ନ ପ୍ରକାର ଅର୍ଥ କରାଯାଏ । ମାନସିଂହ ଆକବରଙ୍କ ସେନାପତି ଭାବରେ ମୋଗଲମାନଙ୍କ ସହିତ ଆସି କୌଶଳକ୍ରମେ ବିଶେଷ ରକ୍ତପାତ

କସାନ୍ତ୍, ଡନ ସସ୍ର ଥିବେ । ଭୁବନ(୩୧)ଠାରେ ସେ ରହିବେ ।୩୯।
ଅଣଗ୍ଳଳଶ ସସ୍ର (୩୨) ସୈନ୍ୟ । ବହ୍ନଣ ଆଣିବେ ଦମନ (୩୩) ।୪୦।
ଚବଣ (୩୪) ପହର ଅନ୍ଧାର । ନ୍ଲଗିବ (୩୫) ମହାକଲ ଘୋର ।୪୧।
ଲକ୍ଷେ ସଜନ ହେବେ ରୁଣ୍ଡ । ଘୋଟିବ କୁରୁକ୍ଷେତ୍ର ଖଣ୍ଡ ।୪୨।
ମଣିକର୍ଣ୍ଣିକା (୩୬) ନଦୀ ଠାର । ଏଣେ ରହିବେ କାଶୀପୁର ।୪୩।
ସୁବର୍ଣ୍ଣରେଖା ଯେନ ପୁଣ । ଋଷି(୩୭)ଯେ କୋଇଲ ଠାବେଣ ।୪୪।
ହର (୩୮) ଯେ ଦୁଆର ଶାରଦା । ଏତେକେ କୁରୁକ୍ଷେତ୍ର (୩୯) ପଦା ।୪୫।
ବାର ଯେ ଘୂଣ ଧାର୍ଦ୍ଧ ପ୍ରଥ । ଏ କଲପଣାରୁ ଉତ୍ପତ୍ତି ।୪୬।

---

ନ କର ଓଡ଼ିଶା ଦଖଲ କରିଥିଲେ । ଅନ୍ୟ ଗୋଟିଏ ଘଟଣାରୁ ଜଣାଯାଏ, କେଶବ ଦାସ ନାମକ ଜଣେ ହିନ୍ଦୁ ମୋଗଲମାନଙ୍କ ସହିତ ମିଶି ଯାତ୍ରୀବେଶରେ ଶ୍ରୀମନ୍ଦିର ମଧ୍ୟକୁ ପ୍ରବେଶ କରି ଲୁଟ୍‌ପାଟ୍ କରିଥିଲେ । ଉଭୟ ଘଟଣାକୁ ଲକ୍ଷ୍ୟକରି କବି 'ମହନା ମୋଗଲ' ଶବ୍ଦ ବ୍ୟବହାର କରିଛନ୍ତି ।

(୩୧) ଭବନ O.L./1199 ପୋଥିପାଠ । ମାନସିଂହ ଭୁବନେଶ୍ୱର ନିକଟବର୍ତ୍ତୀ ପିପିଲି (ପୀରପଲ୍ଲୀ)ଠାରେ ମୋଗଲ ବାହିନୀଙ୍କର ଶିବିର ନିର୍ମାଣ କରି ଖୋର୍ଦ୍ଧା ଆକ୍ରମଣ କରିଥିଲେ । ଖୁବ୍ ସମ୍ଭବତଃ କବି ସେହି ସମ୍ବନ୍ଧରେ ଏଠାରେ ସୂଚନା ଦେଇ କହିଛନ୍ତି—'ଭୁବନଠାରେ' ଅର୍ଥାତ୍ ଭୁବନେଶ୍ୱରଠାରେ ସେନାଗୁହଣୀ ନିର୍ମାଣ କରିବେ ।

(୩୨) ଅଣଢରିଶି O.L./413 ପୋଥିପାଠ ।

(୩୩) ବନ୍ଧି ଯେ ଆସିବେ ଦମନ O.L./1199 ପୋଥିପାଠ ।

(୩୪) ଚୌବଣ O.L./1199 ପୋଥିପାଠ ।

(୩୫) ନାଶିବ O.L./413 ପୋଥିପାଠ ।

(୩୬) ପୁଣି କନକା ନଦୀଠାରେ O.L./1199 ପୋଥିପାଠ ।

(୩୭) ଋଷି ଯେ ଦୋଇର ଠାବେଣ O.L./1199 ପୋଥିପାଠ । ସୁବର୍ଣ୍ଣରେଖାଠାରୁ ଆରମ୍ଭ କରି ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ ଅର୍ଥାତ୍ ଖୋର୍ଦ୍ଧାଗଡ଼ ଉପରେ ଉଭୟ ଉତ୍ତର ଓ ଦକ୍ଷିଣ ପଟରୁ ମୋଗଲମାନେ ଆକ୍ରମଣ କରିଥିବାର କବି ସୂଚନା ଦେଇଛନ୍ତି ।

(୩୮) ଖୋର୍ଦ୍ଧାଗଡ଼ ସନ୍ନିକଟ ହରିପୁର (ଖୋଲ ଦୁଆର) ଓ ଶରଧାପୁର ମୌଜାର ମଧ୍ୟବର୍ତ୍ତୀ ଅଞ୍ଚଳ ଖୁବ୍ ସମ୍ଭବତଃ ମୋଗଲ ତଥା ପାଇକ ବାହିନୀର ଯୁଦ୍ଧକ୍ଷେତ୍ର ହୋଇଥିଲା ।

(୩୯) କୁରୁକ୍ଷେତ୍ର ଅର୍ଥାତ୍ ରଣକ୍ଷେତ୍ର ।

ମଧ୍ୟରେ ପୋତାଯିବ ସ୍ତମ୍ଭ । କଳି ଯେ ଲାଗିବ ଆରମ୍ଭ ।୪୭।
ପୂର୍ବରେ ରହିବେ ଦମନ । ପଶ୍ଚିମ ଦଗେ ଭଗବାନ ।୪୮।
କଳଙ୍ଗ୍ୟ ତେଲଙ୍ଗା ଆସିବେ । ପଶ୍ଚିମଦଗେ ସମ୍ଭାଇବେ ।୪୯।
ସତର ସହସ୍ର ତେଲଙ୍ଗା । ଶୋଣିତେ ପାଗ ହେବ ରଙ୍ଗା ।୫୦।
ଭୋପାଳ (୪୦) ଦେଶ ମହାପତ । ଆସିବେ ଅନେକ ନୃପତ ।୫୧।
କାଉଁସି (୪୧) ଦେଶର ରାଜନ । ବାନ୍ଧି ଆସିବେ ତାର ସୈନ୍ୟ ।୫୨।
ଯେମନ୍ତେ (୪୨) ଛୟାଶୋଇ ସସ୍ର । ମିଳବେ କୁରୁକ୍ଷେତ୍ର ପାଶ ।୫୩।
ଆକାଶୁ ଅଗ୍ନି ଛୁଟି ପଡ଼ । କ ଜାଣି ମେଘ ଘଡ଼ଘଡ଼ି ।୫୪।
ଉଦେ ହୋଇବ ଧୂମକେତ (୪୩) । ଆକାଶେ ଗୋମୁଖ ଉଦତ ।୫୫।
ପୂର୍ବ ପଶ୍ଚିମ ବେନ ଦଗ । ମରୁଡ଼ି ହେବ ଉଦଯୋଗ (୪୪) ।୫୬।
ପ୍ରଥମେ ମରବେ ଭିକ୍ଷାଶୀ (୪୫) । ଦ୍ଵିତୀୟେ ହତ କ୍ଷେତ୍ରବାସୀ(୪୬) ।୫୭।
ତୃତୀୟେ କ୍ଷେତ୍ରୀ ହେବେ ନାଶ । ଶୁଣି ଦାସିଆ(୪୭) ମନେ ତୋଷ ।୫୮।
ମାୟା ଜଟିଳ ବାର ସସ୍ର । ଚଉଦ ଶତ ହତ କୁଣ ।୫୯।

---

(୪୦) ଏହି ପଦ O.L./1199 ପୋଥିରେ ନାହିଁ ।

(୪୧) ବାଉର ଦେଶର ରାଜନ O.L./1199 ପୋଥିପାଠ ।

(୪୨) ଏହି ପଦ ପୂର୍ବରୁ O. L./413 ପୋଥିରେ—
‘ଏକେଣ ପତ ରାଜାମାନ । ରୁଣ୍ଡ ହୋଇବେ ତାଙ୍କ ସୈନ୍ୟ ।।’
ପଦଟିଏ ରହିଛି; କିନ୍ତୁ ଏହାର ଅର୍ଥ ଆଦୌ ସୁସ୍ପଷ୍ଟ ନୁହେଁ ।

(୪୩) ଧୂମକେତ ଶବ୍ଦ ଧୂମକେତୁ ଅର୍ଥରେ ବ୍ୟବହୃତ ହୋଇଛି । ଧୂମକେତୁ ଓ ଗୋମୁଖ ଆଦି ଉଦତ ହେଲେ ରାଷ୍ଟ୍ରବିପ୍ଳବାଦି ଅଶୁଭ ଶକୁନ ସମ୍ଭବ ହୁଏ ବୋଲି ଶକୁନ-ଶାସ୍ତ୍ରରେ ରହିଛି ।

(୪୪) ଉଦ୍‌ଯୋଗ ଶବ୍ଦର କାବ୍ୟିକ ପ୍ରୟୋଗ ଉଦଯୋଗ ।

(୪୫) ଭିଖାରି O.L./1191 ପୋଥିପାଠ ।

(୪୬) ଖରବାସୀ O.L./413 ପୋଥିପାଠ ଏବଂ ‘ଦ୍ଵିତୀୟେ ହତ ହେବେ ରାଜା’ O.L./1199 ପୋଥିପାଠ । ଏଠାରେ କ୍ଷେତ୍ର ଉପରେ ନିର୍ଭର କରୁଥିବା ଲୋକଙ୍କୁ ‘କ୍ଷେତ୍ରବାସୀ’ କୁହାଯାଇଛି ।

(୪୭) ବାଲୁଗାଁ O.L./1199 ପୋଥିପାଠ ।

ଯେଉଁ ବୈଷ୍ଣବ ମାୟା ସାଧୁ । ହରନ୍ତି ପର କୁଳବଧୂ ।୬୦।
ଶାହାସ୍ତ ଶୋଳକ ଗୁନ୍ଥାଇ । ଦାଣ୍ଡରେ କହନ୍ତି ବଢ଼ାଇ (୪୮) ।୬୧।
ଭଙ୍ଗିମା କରଣ ଛଳକ । (୪୯) ବଡ଼-ଆରମ୍ଭ କରି ଭେକ ।୬୨।
ଭଙ୍ଗିମା କରି ଗୀତ ଗାଇ । ପରର ବନିତା ଭୁଲାଇ ।୬୩।
ସ୍ତ୍ରିରଙ୍କି କରନ୍ତି ରମଣ । ଏଥୁ ଥୋକାଏ ଯିବେ ହାଣ ।୬୪।
ସପତ ହାନ ଯେ ଅକାର । ଘୋଟି ରହିବ ଭବପୁର ।୬୫।
ଏ ସାତହାନ ହେବ ଯୁଦ୍ଧ । ଅନେକ ପାପୀ ହେବେ ବଧ ।୬୬।
ଚଉଦ ଅଙ୍କ ଠାରେ ଯାଇ । କ୍ଷେତ୍ରରେ ନରହିବେ କେହି(୫୦)।୬୭।
କ୍ଷେତ୍ରରେ ଥୋକେ ଯିବେ ହାଣ । ସାନ(୫୧) ସହସ୍ର ପରମାଣ ।୬୮।
କୈବଲ୍ୟପୁର (୫୨) ଖରେ ଯାଇ । ସେଠାରେ ହାଣ ସସ୍ର(୫୩) ଦୁଇ ।୬୯।
ଅମୃତପୁର ଠାରେ ଜାଣ । ସହସ୍ରେ ଯିବେ ତହିଁ ହାଣ ।୭୦।
ସେଠାରୁ ଭୁବନେ ଯେ ଶୂର । ହତ ହୋଇବେ ଶତ ବାର ।୭୧।
ସେଠାରୁ କୁଶଭଦ୍ରା ନଇ । ନାଶ ହୋଇବେ ଶତ ଦୁଇ ।୭୨।
ଏମନ୍ତେ ଥୋକେ ଯିବେ ହାଣ । ଅଟଇ ଆମ୍ଭର ଭିଆଣ ।୭୩।

---

(୪୮) ଏହି ପାଦଟି O.L./1199 ପୋଥିରେ "ପରର ବନିତା ଭୁଲାଇ" ବୋଲି ଲେଖାଅଛି । ପରପଦରେ ଏକାପରି ପାଦଟିଏ ଥିବାରୁ "ଦାଣ୍ଡରେ...ବଢ଼ାଇ" ଯୁକ୍ତିଯୁକ୍ତ ।

(୪୯) 'ଘର ଆରମ୍ଭ' O.L./413 ପୋଥିପାଠ; କିନ୍ତୁ 'ବଡ଼-ଆରମ୍ଭ' ପାଠଟି ବଡ଼ ଆଡ଼ମ୍ବର ଶବ୍ଦର ଅପଭ୍ରଂଶ; ଅର୍ଥାତ୍ ନିଜକୁ ଜଣେ ସଚ୍ଚା ସାଧୁ ବୋଲି ପ୍ରମାଣିତ କରାଇବା ପରି ଭେକ=ବେଶ-ପୋଷାକ ।

(୫୦) ୬୮ ସଂଖ୍ୟକ ପଦ ପରେ—

ଯେମନ୍ତ ଭୂମିଖଣ୍ଡ ଜାଣ । କେହି ଯେ ନ ରହିବେ ପୁଣ ॥
ଯେ କୁଳମନ୍ତ୍ର ଶୂଳରହି । ଚବଣେ ନ ରହିବେ କେହି ॥

O.L./413 ପୋଥିରେ ଅଧିକ ରହିଛି; କିନ୍ତୁ ଏହାର ଉପାଦେୟତା ବିଶେଷ ଅନୁଭୂତ ହୁଏ ନାହିଁ ।

(୫୧) 'ଶତେ ସହସ୍ର' O.L./1199 ପୋଥିପାଠ ।

(୫୨) କୈବଲ୍ୟପୁର ଖୋର୍ଦ୍ଧା ବରୁଣେଇ ପାହାଡ଼ଠାରୁ ପଶ୍ଚିମ-ଦକ୍ଷିଣ କୋଣରେ ପ୍ରାୟ ପାଞ୍ଚ ମାଇଲ ଦୂରରେ ଅବସ୍ଥିତ ।

(୫୩) 'ଶତଦୁଇ' O.L./1199 ପୋଥିପାଠ ।

ବିଶୂଳପାଣିଆ ଯେ ନାଶ । ଏଣୁ ହୋଇବ କଳି ଶେଷ ।୭୪।
ଯେ ଜନ ଧର୍ମରେ ଆଶ୍ରିତ । ତାକୁ ବୋଲିବା (୫୪) ବଳବନ୍ତ ।୭୫।
ଦୟା ଧର୍ମରେ ଯେ ସରକ୍ଷ । ତାକୁ ହୋଇବୁ ସାହାପକ୍ଷ ।୭୬।
ଶୂନ୍ୟରୁ ପଡ଼ିବ ଯେ ଘଣ୍ଟ । ମୋ ଭକ୍ତ ମେଣ୍ଟିବ ସଙ୍କଟ ।୭୭।
ବୋଲନ୍ତି ବଲାଗାଁ ଯେ ଦାସ । ଶୁଣିମା ହେଉ ପୀତବାସ ।୭୮।
ମୁହିଁ ପୁଛଇ ମୂଢ଼ପଣ । କହିବା ନାମ ତେରଜଣ ।୭୯।
କହନ୍ତି ପ୍ରଭୁ ଭଗବାନ । ଶୁଣ ଭଗତ ମୋ ବଚନ(୫୫) ।୮୦।
ପଞ୍ଚୁ ପାଣ୍ଡବେ ହେବେ ଜନ୍ମ । ଯୁଜେଷ୍ଟି ଭୀମ ଯେ ଅର୍ଜ୍ଜୁନ ।୮୧।
ନକୁଳ ସହଦେବ ପାଞ୍ଚ । ଅର୍ଜ୍ଜୁନ ଗାଣ୍ଡିବ ଆମଞ୍ଚ ।୮୨।
ଭୀମ ଧରିବେ ଗଦାବର(୫୬) । ମୋ ସଙ୍ଗେଥିବେ ବୃକୋଦର(୫୭)।୮୩।
ଅସ୍ତମା(୫୮) ବୋଲି ବୀର ପୁଣି । ପବନସୁତ (୫୯) ବୀରମଣି ।୮୩।
ଭୀଷ୍ମ ଦ୍ରୋଣକୁ ହେବେ ଶିର । ଜାଣ ହେ ଦାସେ ତଥି(୬୦)କର ।୮୪।
ଶ୍ରୀକୃଷ୍ଣ ବଳଭଦ୍ର ବେନ । ଯେମନ୍ତେ ତେରଜଣ(୬୧) ଭଣି ।୮୬।
ଅଶ୍ୱତ୍ଥାମାର ଘଣ୍ଟ ଆସି(୬୨) । ଶୂନ୍ୟରୁ ପଡ଼ୁଥିବ ଖସି ।୮୭।
ପୂର୍ବଦିଗରେ ବାଲିକୁଦ । କଦମ୍ବ ତେରଗଛ ତେଜ ।୮୮।
ତହିଁ ବିଶ୍ରାମି ମୋଦେ ଆସି । କହନ୍ତି ପ୍ରଭୁ ହୃଷୀକେଶୀ (୬୩) ।୮୯।

---

(୫୪) 'ହୋଇବୁ' O.L./413 ପୋଥିପାଠ ।
(୫୫) ୭୯ରୁ ୮୧ ପଦ ପର୍ଯ୍ୟନ୍ତ O.L./1199 ପୋଥିରେ ନାହିଁ; କିନ୍ତୁ ପରବର୍ତ୍ତୀ ପଦରେ ତେର ଜଣଙ୍କ ନାମ ରହିଥିବାରୁ ଏହି ତିନପଦର ପ୍ରାସଙ୍ଗିକତା ରହିଛି ।
(୫୬) ଗଦାଭର O.L./413 ପୋଥିପାଠ । (୫୭) ବୃକୋଦର—ଭୀମ ।
(୫୮) ଅଶ୍ୱତ୍ଥାମା ଶବ୍ଦର ଦେଶଜ ପ୍ରୟୋଗ । (୫୯) ପବନସୁତ—ହନୁମାନ ।
(୬୦) ତଥିକର—ତଥ୍ୟକର ଅର୍ଥରେ ବ୍ୟବହୃତ ।
(୬୧) କବିଙ୍କ ରଚନା ଅନୁସାରେ ତେରଜଣ ହେଉନାହାନ୍ତି । କାରଣ ପଞ୍ଚପାଣ୍ଡବ, ଭୀଷ୍ମ, ଦ୍ରୋଣ, ଅଶ୍ୱତ୍ଥାମା, ହନୁମାନ, କୃଷ୍ଣ, ବଳରାମଙ୍କୁ ମିଶାଇ ଏଗାରଜଣ ହେଉଛନ୍ତି । ବୋଧହୁଏ ଭକ୍ତ ବାଲିଗାଁ ଦାସ ଓ ଶ୍ରୀଜଗନ୍ନାଥଙ୍କୁ ମିଶାଇ ତେରଜଣ କରାଯାଇଛି । ୮୫ ପଦଠାରୁ ୮୭ ପଦ ପର୍ଯ୍ୟନ୍ତ ପାଠ O.L./1199 ପୋଥିରେ ନାହିଁ ।
(୬୨) 'ଅସଥାମାର ଘଟ ଆଶ୍ରି' O.L./1199 ପୋଥିପାଠ ।
(୬୩) ୮୯ ଓ ୯୦ ପଦ O.L./1199 ପୋଥିରେ ନାହିଁ ।

| | |
|---|---|
| ଦୁଷ୍ଟ ଯେ ସେହୁ ପାପୀ ପୁଣ | ପାପୀ ଯେ ପାଇବ କଷଣ(୭୪) ।୯୦। |
| ସ୍ୱେମନ୍ତେ ରାମଚନ୍ଦ୍ର ଦେବ | କୃଷ୍ଣର ତେଜ ଅଙ୍ଗେ ଥିବ (୭୫) ।୯୧। |
| ଗୋପ୍ୟାନ୍ତୁ ବାହାର ହୋଇବ (୭୬) | ଅନେକ ଅସୁର ମାରିବ ।୯୨। |
| ଖେଦ (୭୭) ମାରିବ ମହାରାଜା | ବଡ଼ଇ ପ୍ରତାପୀ ପରଜା ।୯୩। |
| ମାରିବ ଯାଜପୁର ଯେଜ୍ଞ | (୭୮)ସ୍ୱେମନ୍ତେ ସାଧିବେ ମେଦଜ୍ଞା।୯୪। |
| କଟକେ (୭୯) ହୋଇବେ ଯେ ରାଜା | କରଣ ବଡ଼ଇ ତରଜା ।୯୫। |
| ତାହାର ବୀର ଶୂରପଣ (୭୦) | ଶୁଣିଣ ବାହୁବେ ଦମନ ।୯୬। |
| ନାମ ତାହାର ନଉରଙ୍ଗ (୭୧) | କରିବେ ଘୋର ରଣରଙ୍ଗ ।୯୭। |
| ଏମନ୍ତେ ତେରଜଣ ଯାଣ | ତେରେ ଭଜିବେ ଯୋକେ ରଣ ।୯୮। |
| ଆସିବେ ଅପ୍ରମିତେ ବାହୁ (୭୨) | ଯାଜପୁରକୁ ମାଡ଼ି ରହୁ ।୯୯। |
| ପଞ୍ଚଣ ସସ୍ର ହସ୍ତ ୟୁଥ | ପାଦାନ୍ତବଳ ଅପ୍ରମିତ ।୧୦୦। |
| ଅଣଗ୍ନଳଗି ସସ୍ର ବଳ | ଘୋଟି ଆସିବେ ଭୂମିତଳ(୭୩) ।୧୦୧। |

---

(୭୪) ଏହୁ ପଦଟି କମ୍ନଲିଖିତମତେ ରହିଛି O.L/1199 ପୋଥିରେ—
'ଦୁଷ୍ଟ ଯେ ସନ୍ଥ ଦ୍ୱାରା ଗୁଣ । ପାପୀ ଯେ ହୋଇବେ ମରଣ ॥'

(୭୫) 'ଅନେକ ଅସୁର ମାରିବ' O.L./1199 ପୋଥିପାଠ ।

(୭୬) ଏହୁ ପଦଟି ମଧ O.L./1199 ପୋଥିରେ ନାହିଁ ।

(୭୭) 'ଦେଖି ମାରିବ' O.L./1199 ପାଠ ।

(୭୮) 'ସ୍ୱେକାନ୍ତେ' O.L./1199 ପାଠ ।

(୭୯) ଏହୁ ପଦଟି 1199 ସଖ୍ୟକ ପୋଥିରେ—
'କଟକେ ହୋଇବେ ରାଜନ । ସ୍ୱେମନ୍ତେ ତେରହନ ଜାଣ ॥'

(୭୦) ଏହୁ ପଦଟି ମଧ 1199 ସଖ୍ୟକ ପୋଥିରେ ନାହିଁ; କନ୍ତୁ ତା ବଦଳରେ ଗୋଟିଏ ପାଦ "ତେରରେ କେତେ ଯିବେ ହାଣ" ମାତ୍ର ରହିଛି ।

(୭୧) ୯୮ ଓ ୯୯ ପଦ O.L./1199 ପୋଥରେ ନାହିଁ । ଏହୁ ପୋଥିବର୍ଣ୍ଣିତ ନଉରଙ୍ଗ ଖୁବ୍ ସମ୍ଭବତଃ ଆଓରଙ୍ଗଜେବ୍ ହୋଇ ପାରନ୍ତି । ସେ ହିନ୍ଦୁ-ବିଦ୍ୱେଷୀ ଓ ଶ୍ରୀଜଗନ୍ନାଥ ଦେବଙ୍କ ମନ୍ଦିର ଆକ୍ରମଣ କରିବାରେ କଠୋର ମୁସଲମାନ ଥିଲେ ।

(୭୨) 'ଆସିବେ ସବଂରାଜା ବାହୁ' O.L./1199 ପାଠ ।

(୭୩) 'ଘୋଡ଼ା ଆସିବେ ଭୂମିତଳ' O.L./1199 ପାଠ ।

କୁମାର(୭୪) ବୀରବର ଜେନା (୭୫) । ଉଡ଼ାଇ ଧୀରବର ବାନା (୭୬) ।୧୦୨।
ଢଆନ (୭୭) ପାଦାନ୍ତ କରନ୍ଦ୍ର । ବାହୁଣ ଆସିବେ ନରନ୍ଦ୍ର (୭୮) ।୧୦୩।
ଅଶ୍ୱ ଯେ ଥିବେ ତେରଶତ । ବଳ ତା କେ କରିବ ଅନ୍ତ ।୧୦୪।
ଆସିବେ ବେନି କୋଶ ମାତ୍ର । ଭୁବନଶ୍ୱର (୭୯) ଠାରେ ଛତ୍ର ।୧୦୫।
ପୁରି ରହିବେ ବନ (୮୦) ଦେଶ । କରିବେ ଘରଦ୍ୱାର ନାଶ ।୧୦୬।
ଏ ରଜା ନାମ ଗୋଲକୁଣ୍ଡା (୮୧) । ଅନେକ ନପାଠିବ ନଣ୍ଡା ।୧୦୭।
ବାଲିଗାଁ ଦାସ ତାହା ଶୁଣି । କହନ୍ତି ପ୍ରଭୁ ଚକ୍ରପାଣି (୮୨) ।୧୦୮।

ଇତି ଶ୍ରୀ କଳିଭାରତେ ବାଲିଗାଁ ଦାସିଆ ଶ୍ରୀକୃଷ୍ଣ ସମ୍ବାଦେ ଗୋଲାସ୍ଥ କଥା ଆଗତ ଭବିଷ୍ୟ କଥନେ ନାମ ଚତୁର୍ଥ ଅଧ୍ୟାୟ । (୮୩) □□□

---

(୭୪) କୁମାର ବୀରବର ଜେନା ବୋଧହୁଏ ଗଜପତି ରାମଚନ୍ଦ୍ରଙ୍କ ବଡ଼ପୁଅ ପୁତ୍ର ଭାଗୀରଥି କୁମାର ହୋଇଥିବା ଅସମ୍ଭବ ନୁହେଁ ।

(୭୫) 'କୃପାଚଂ ବୀରବର ଜେନା' O.L./1199 ପାଠ ।

(୭୬) 'ଉଡ଼ାଇ ରଣକ୍ଷେତ୍ର ବାନା' O.L./1199 ପାଠ ।

(୭୭) ଏ ଢଆନ୍ ଅର୍ଥାତ୍ ଦେଓ୍ୱାନ୍ ବୋଧହୁଏ ଗଜପତିରାଜା ରାମଚନ୍ଦ୍ର ଦେବ (୨ୟ)ଙ୍କ ଦେଓ୍ୱାନ ଜାଲାମ୍ବର ହରିଚନ୍ଦନ ହୋଇପାରନ୍ତି ।

(୭୮) 'ଆସେ ପାଦାନ୍ତ ନରନ୍ଦ୍ର ବାହୁ ଆସିବେ ତତ୍ପର' O.L./1199 ପାଠ ।

(୭୯) ଭୁବନଶ୍ୱର—ମନ୍ଦିରମାଳିନୀ ନଗରୀ ଭୁବନେଶ୍ୱର ଅର୍ଥରେ ପ୍ରୟୋଗ କରାଯାଇଛି ।

(୮୦) ବଳଦେଶ O.L./1199 ପୋଥିପାଠ ।

(୮୧) ମୋଗଲମାନଙ୍କ ଆକ୍ରମଣ ଗୋଲକୁଣ୍ଡା ପଟରୁ ହୋଇଥିଲା । ସେହି ଘଟଣାକୁ ଲୋକ-ମୁଖରୁ ଶୁଣି ଗୋଲକୁଣ୍ଡା ରଜା ବୋଲି କବି ଲେଖିଛନ୍ତି ।

(୮୨) ବାଲିଗାଁ ଦାସ ତୋଷ ଶୁଣି । ଗରିବ ଦାସ ଭାବେ ଭଣି ॥
ଯେତେ ଅଧ୍ୟା ଅଟେ ଶତେ ପଦ । ଶ୍ରୀଗୁରୁ ଆଜ୍ଞାରେ ଭେଦବ ॥
କୃଷ୍ଣଙ୍କୁ କରିଅଛି ଆଶ୍ରା । ମିଛୁଆ ଅଧମ ଭରସା ॥ O.L./1199 ପାଠ ।

(୮୩) ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ବାଲିଗାଁ ଦାସିଆ ଶ୍ରୀକୃଷ୍ଣ ସମ୍ବାଦେ ଗୋଲା-ଅଷ୍ଟ ଆଗତ ଭକତେ ନାମ ଚତୁର୍ଥ ଅଧ୍ୟାୟ । O.L./1199 ପାଠ ।

# ପଞ୍ଚମ ଅଧ୍ୟାୟ

| | | |
|---|---|---|
| କହନ୍ତି ପ୍ରଭୁ ଜଗନ୍ନାଥ | । ଆଗତ ଭବିଷ୍ୟ ଉକତ | ।୧। |
| ଦାସେ ଶୁଣନ୍ତି ସେବକମାନେ | । ଏ କଳିଯୁଗର ଆଖ୍ୟାନେ | ।୨। |
| ଦିଲ୍ଲୀ ପାତଶା(୧) ଦେବେ ଧାଡ଼ି | । ଆସିବେ ବଳକ୍ଷମା (୨) ମାଡ଼ି | ।୩। |
| ଆସିବେ ସବୁ ରାଜା ବାହି | । ତା ପୁରେ ନ ରହିବେ କେହି (୩) | ।୪। |
| ଦାନ୍ତିଆ ପହଣି (୪) କ ମୀନ | । ତେମନ୍ତେ ଆସିବେ ଦମନ | ।୫। |
| ଆମ୍ଭେ ଯେ ଚଇତ (୫) ମାସର | । ଦ୍ୱିତୀୟା ବୃହସ୍ପତି ବାର | ।୬। |
| ଅଠର-ନଳାଠାରେ ଯାଇ | । (୬) ପାଞ୍ଚ ଯେ ଅଶ୍ୱ ଥିବେ ରହି | ।୭। |
| ସିଂହଦୁଆରଠାରେ ସାତ | । କଳପବୃକ୍ଷ ଅଶ୍ୱ ଜାତ | ।୮। |
| ଚଢ଼ିବୁ ତେର ଅସୁଆର (୭) | । ହସ୍ତରେ ଧରଣ କୁଠାର | ।୯। |
| କ୍ଷେତରେ ପଶିବୁ ଧସାଇ (୮) | । ଆମ୍ଭେ ଯେ ଥିବୁ ଦୁଇଭାଇ | ।୧୦। |
| ତେର ଯେ ଅସୁଆର ସଙ୍ଗେ | । (୯) ଘୋଡ଼ା ଚଢ଼ିବୁ ନାନାରଙ୍ଗେ | ।୧୧। |

---

(୧) ଦିଲ୍ଲୀ ବାଦ୍‌ଶାହଙ୍କ ପ୍ରତିନିଧିରୂପେ ମହମ୍ମଦ ତକ୍‌କ ଖାଁ ରାଜଦେବ ଗଜପତିଙ୍କ ସମୟରେ ଖୁରୁଧା ଉପରେ ପ୍ରଚଣ୍ଡ ଆକ୍ରମଣ ଚଳାଇଥିଲେ । ସେ ଶିଶୁପାଳଗଡ଼, ରଥିପୁର ଅଧିକାର କରି ଗଜପତିଙ୍କୁ ପଦାନତ କରିଥିଲେ । ସେହି ଘଟଣାକୁ ଲକ୍ଷ୍ୟକରି ବୋଧହୁଏ କବି ଏପରି ଲେଖିଛନ୍ତି ।

(୨) କ୍ଷମ—ପୃଥିବୀ । 'ଆସିବେ ନବ ଲକ୍ଷ ମାଡ଼ି' O.L./413 ପୋଥିପାଠ ।

(୩) ଏ ପଦଟି O.L./1199ରେ ନାହିଁ ।

(୪) ଦାନ୍ତିଆ ପହଣି—ଏକପ୍ରକାର ମାଛଧରା ଯନ୍ତ୍ର; କିନ୍ତୁ O.L./1199 ପୋଥିରେ 'ଦାସିଆ ପହଣି କ ମନ । ବାହି ଯେ ଆସିବେ ଦମନ' ବୋଲି ପାଠଭେଦ ଅଛି ।

(୫) ଚଉଦ O.L./413 ପୋଥିପାଠ ।

(୬) ପଶ୍ଚିମେ O.L./1199 ପାଠ ।

(୭) ତେରଟି ଅଶ୍ୱର O.L./1199 ପୋଥିପାଠ । ଅସୁଆର—ଘୋଡ଼ସବାର ।

(୮) ଧସାଇ—ବଳପୂର୍ବକ । (୯) ରଥେ O.L./1199 ପୋଥିପାଠ ।

ଗୋଡ଼ାଇ ମାରନ୍ତି ଅସୁର । ଟିକଣ୍ଠ ଗୋହୁଣ୍ଡ ମଧ୍ୟର (୧୦) ।୧୨।
ହାଣ ଯେ ଟିକଣ୍ଠ ଗୋହୁଣ୍ଡ । ଶ୍ରୀହସ୍ତେ ପକାଇବ ମାର ।୧୩।
କାଳିଆ ଧାଇ ଯାଏ ପୁଣି । ତେର ଅଶ୍ୱରେ ଯିବୁ ହାଣି ।୧୪।
ଦେଖି ଦେବତା ହେବେ ତୋଷ । ଆକାଶୁ ବରଷିବ ପୁଷ୍ପ ।୧୫।
ଦେବେ ରହିବେ ଆକାଶରେ । କୁସୁମ ବରଷିବେ ଶିରେ ।୧୬।
ମେଲଛ (୧୧) ଯିବେ ସବୁ ନାଶ । ପୃଥିବୀ ହୋଇବ ଉଶ୍ୱାସ ।୧୭।
ବସନ୍ତ ବହିବ ସଧୀର । ନାଶିବ ଅବନୀର ଭାର ।୧୮।
କକଡ଼ାଠାରୁ ପାଠ (୧୨) ହତ । ଅବନୀ ହୋଇବ ନକ୍ଷତ୍ର ।୧୯।
ଆମ୍ଭେ ବାହୁଡ଼ି ଆସି ପୁଣ । ସଙ୍ଗତେ ଥିବେ ତେର ଜଣ ।୨୦।
ନରାନ୍ଦ୍ର (୧୩) ଶଉଚର ଠାଇ । ଅଶ୍ୱ ରଖିବୁ ଦୁଇଭାଇ ।୨୧।
ଜଳ ପିଇଣ ମନ ତୋଷ । ସିଂହଦୁଆରେ ପରବେଶ ।୨୨।
ଗୁପତେ ହୋଇବୁ ସେଠାର । ଏମନ୍ତେ ଶେଷ କଳି ଘୋର ।୨୩।
ଅନନ୍ତ କେଶରୀ ଯେ ଯାଇ । ଖଣ୍ଡଗିରି ଗୁପତେ ରହି ।୨୪।
ଗୁପତ ଥାନ ଅଳଙ୍ଘ । ରାଜା ଅଛନ୍ତି ବଡ଼ପୁଣ୍ଟ ।୨୫।
ବେନି ଯେ ଲିଙ୍ଗ ଛନ୍ତି ରହି । ଲିଙ୍ଗ ମଧ୍ୟରେ ଲିଙ୍ଗ ରହି(୧୪) ।୨୬।
ଯେମନ୍ତେ ପ୍ରଭୁ ଭାବଗ୍ରାହୀ । ଦାସକୁ କହନ୍ତି ମଣାଇ(୧୫) ।୨୭।

---

(୧୦) ଗୋହୁଣ୍ଡ ଟିକଣ—ଯାଜପୁର ନିକଟବର୍ତ୍ତୀ ଗୋଟିଏ ସ୍ଥାନ, ଯେଉଁଠାରେ ଯବନ ଓ ମୁକୁନ୍ଦଦେବଙ୍କର ଲଢ଼ାଇ ହୋଇଥିଲା । କବି ବୋଧହୁଏ ସେହି ଘଟଣାକୁ ଲୋକ-ମୁଖରୁ ଶୁଣି ତାକୁ ଏଠାରେ ପ୍ରୟୋଗ କରିଛନ୍ତି ।

(୧୧) ମେଲଛ—ମ୍ଳେଚ୍ଛ ଶବ୍ଦର ଦେଶଜ ରୂପ; 'କ୍ଷ'କୁ ଛ ଓ 'ଛ'କୁ କ୍ଷ କରି ଲେଖିବା ଓ ପଢ଼ିବା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଦେଖାଯାଏ ।

(୧୨) ଷାଟହତ—O.L./1199 ପୋଥିପାଠ । ଉଭୟ ପୋଥିର ପାଠ ବିଶେଷ ଅର୍ଥବୋଧକ ନହେଲେ ମଧ୍ୟ O.L./413 ପୋଥିର ପାଠରୁ ଅନୁମାନ କରି ହୁଏ ଯେ, ସେହିଦିନଠାରୁ ଅର୍ଥାତ୍ କକଡ଼ାମାସଠାରୁ ସମସ୍ତ ଗଣ୍ଡଗୋଳ ଉପଶମ ହୋଇ ଶାନ୍ତିସ୍ଥାପନର ବାଟ ଫିଟିବ ।

(୧୩) ନରାନ୍ଦ୍ର ଶଉଚ—ନରେନ୍ଦ୍ର ପୁଷ୍କରିଣୀର ଲୋକମୁଖରେ ପ୍ରଚଳିତ ନାମ ।

(୧୪) ୨୦ ପଦଠାରୁ ୨୬ ପଦ ପର୍ଯ୍ୟନ୍ତ— O.L./1199 ପୋଥିରେ ନାହିଁ ।

(୧୫) ଏହି ପଦଟି O.L./1199 ପୋଥିରେ ଅଛି—
'ଦାସକୁ କହନ୍ତି ବୁଝାଇ । ସେଠାରେ ପୁଣି ଅଛି ରହି ॥'

ସେମନ୍ତେ ଶୁଣ ରସ ବାଣୀ । କହନ୍ତି ପ୍ରଭୁ ଚକ୍ରପାଣି ।୨୮।
ଆକାଶୁ ଶୁଭିବ ବଚନ । ଜନ୍ମ ହୋଇବେ ଭଗବାନ ।୨୯।
ହସ୍ତୀର କନ୍ଧରେ କଳସ । ଯେଣ୍ଣ ବୁଲୁଥ ବନ ଦେଶ ।୩୦।
ଇଚ୍ଛା ସୁଖରେ ହସ୍ତୀ ଯିବ । ଯା ଶିରେ କଳସ ଢାଳିବ ।୩୧।
ସେ (୧୬) ସେଣୁ ହୋଇବ ରାଜନ । ସ୍ୱର୍ଗରୁ ଶୁଭିବ ବଚନ ।୩୨।
ସେମନ୍ତେ କହିବେ ଶୂନ୍ୟରେ । ଦେବେ ଚଳିବେ ଯେ ଯାହାରେ ।୩୩।
ଆକାଶୁ ଶବଦ ଯେ ଶୁଣି । ହସ୍ତୀକି ମଣ୍ଡାଇବେ ଆଣି ।୩୪।
ଆମ୍ଭେ ରୂପତେ ଥିବୁ ରହି । କାୟା ପ୍ରବେଶ ହେବୁ ଯାଇ ।୩୫।
ଦିବ୍ୟ ବାଳକ ରୂପ ହୋଇ । ବେଶ ବସନ କିବା କହି ।୩୬।
ଅଷ୍ଟାଦଶ ଯେ ଚିହ୍ନ ଶୋହେ । ରୂପେ କାମିନୀ ମନ ମୋହେ ।୩୭।
ଗଦା ଯେ ପଦ୍ମ ଶଙ୍ଖ ଚକ୍ର । ଶଙ୍ଖ ଗରବ କରେ ବକ୍ର ।୩୮।
ସେମନ୍ତେ ରୂପ ଧରି (୧୭) ମୁହିଁ । ବଡ଼ଦାଣ୍ଡରେ ଥିବି ମୁହିଁ (୧୮) ।୩୯।
ସଙ୍ଗତେ ବାଳକ ସୋଦର (୧୯) । ଖେଳିବୁ ବଳଗଣ୍ଡି ଠାରି ।୪୦।
କୃଷ୍ଣ (୨୦) ଯେ ସପତମୀ ଦିନ । ଆଦିତ୍ୟ ରୋହିଣୀ ଯେ ପୁଣ ।୪୧।
ଖେଳ (୨୧) ରସରେ ଥିବୁ ମାତି । ସେମନ୍ତେ ମିଳିବ ଯେ ହସ୍ତୀ ।୪୨।
କଳସ ଆଣି ମୋର ମାଥ । ବେଗେ ଢାଳିବେ ଯେ ସେମନ୍ତ(୨୨)।୪୩।
ସ୍ୱର୍ଗେ ଶୁଭିବ ବେଦଧ୍ୱନି । ଶୋଭା(୨୩) ଯେ ଦିଶିବ ମେଦିନୀ ।୪୪।
ଗନ୍ଧର୍ବେ କରିବେ ଯେ ନୃତ୍ୟ । ଅଳକ କରି ଗାଇ ଗୀତ(୨୪) ।୪୫।
ନାରଦ ବଜାଇବେ ଯନ୍ତ୍ର । କରିବେ ତାଣ୍ଡବ ଯେ ନୃତ୍ୟ ।୪୬।

---

(୧୬) ସେ ସେବେ—O.L./1199 ପାଠ ।
(୧୭) ଗଦାଧର—O.L./413 ପୋଥିପାଠ ।
(୧୮) 'ରହି' କଲେ ସମୀଚୀନ ପାଠ ହେବ ।
(୧୯) ମୋହର—O.L./413 ପୋଥିପାଠ ।
(୨୦) ଚୈତ୍ରେ ଯେ ସଙ୍କରାନ୍ତି ଦିନ—O.L./1199 ପୋଥିପାଠ ।
(୨୧) ଖେଳ ହରଷେ—O.L./1199 ପୋଥିପାଠ ।
(୨୨) 'ମସ୍ତେମଥା' O.L./1199 ଓ 'ମସ୍ତେମତ' O.L./413 ପୋଥିପାଠ ।
(୨୩) ଶୋଭା ଯେ ପାଇବ O.L./1199 ପୋଥିପାଠ ।
(୨୪) ଆଳସ କରି ଗାଇ ଗୀତ O.L./1199 ପୋଥିପାଠ ।

କୁସୁମ ବରଷିବ ଶିର । ଦେବେ ବୋଲିବେ ହରହର(୨୫)।୪୭।
ସଙ୍ଗତେ ଥିବେ ମୋର ଭକ୍ତ (୨୬) । ଆନନ୍ଦେ କରୁଥିବେ ନୃତ୍ୟ ।୪୮।
ବିଜୟେ ଚଢ଼ି ଶ୍ୱେତ ଗଜ । ହେବେ ଦେବାଧିଦେବରାଜ ।୪୯।
ତଦନ୍ତେ ଅନଙ୍ଗ କେଶରୀ (୨୭) । ରାଜା ଯେ କରିବୁ ବିସ୍ତର ।୫୦।
ଧଉଳଠାରୁ ଅବତାର । ଚଢ଼ିଣ ଶ୍ୱେତ ଅଶ୍ୱପର ।୫୧।
ଲକ୍ଷ ଯେ କୋଟି ବଳ ସଙ୍ଗେ । ଦୁନ୍ଦୁଭି ବାଜୁଥିବ ରଙ୍ଗେ ।୫୨।
ବୀର କାହାଳୀ ଜୟ ଶଙ୍ଖ । ବର୍ଦ୍ଧିଣୀ କାହାଳିମା ଶଙ୍ଖ(୨୮) ।୫୩।
ସ୍ୱେତେକେ (୨୯) କେଶରୀ ନରେନ୍ଦ୍ର । ଚଢ଼ିଣ ସୁଖେ ଯେ କରୀନ୍ଦ୍ର (୩୦) ।୫୪।
କହନ୍ତି ଦେବ ନାରାୟଣ । ଆହେ ବାଲଗାଁ ଦାସ ଶୁଣ ।୫୫।
ଶୁଣି ବାଲଗାଁ ଦାସ ତୋଷ । ଶୁଣ ହେ ପ୍ରଭୁ ପୀତବାସ (୩୧) ।୫୬।
ଯେତେ କହିଲ ଅସମ୍ଭବ । ପ୍ରାଣୀଙ୍କି କାହିଁ ଅଛି ଠାବ ।୫୭।
କାହିଁ ପଶିବେ ଯାଇ ଜନ । ଅପ୍ରତେ ପାଉଅଛୁ ମନ ।୫୮।
ଭଗତେ ଥିବେ ପୁଣ କାହିଁ । ଏ କଥା କହ ଭାବଗ୍ରାହୀ ।୫୯।
ବାଲଗାଁ ଦାସ ମୁଖୁ ଶୁଣି । କହନ୍ତି ପ୍ରଭୁ ଚକ୍ରପାଣି ।୬୦।
ସ୍ୱେ ଠାବ ସେ ଠାବ ଯେ କାହିଁ । ଏ ଛନ ପୁରେ ଠାବ ନାହିଁ(୩୨) ।୬୧।
କର୍ମ ବିପାକ ଥିବ ଯାକୁ । ଯୋଗ କଢ଼ାଇ ନେବ ତାକୁ(୩୩) ।୬୨।
ବିହି ଯେମନ୍ତ ଲେଖିଥାଇ (୩୪) । ସେ ଜନ (୩୫) ସେଠାବକୁ ଯାଇ ।୬୩।

---

(୨୫) 'ହରେ ହରେ' ଉଭୟ ପୋଥିର ପାଠ ।
(୨୬) 'ଭୃତ୍ୟ' O.L /1199 ପାଠ ।
(୨୭) ଅନନ୍ତ କେଶରୀ ରୂପେ ବଳରାମ କଳି କାଳରେ ଅବତାର ହୋଇ ମ୍ଳେଚ୍ଛ ସଂହାର କରିବେ ବୋଲି ଅନ୍ୟାନ୍ୟ ଆଗତ ଭବିଷ୍ୟ ପୋଥିପାଠରୁ ଜଣାଯାଏ ।
(୨୮) 'ବତିଶ ତେୟାଳିଶ ଅଙ୍କ' O.L./413 ପୋଥିପାଠ; କିନ୍ତୁ ଏ ପାଠର ସମୁଚିତ ଅର୍ଥ ଆଦୌ ସୁସ୍ପଷ୍ଟ ନୁହେଁ ।
(୨୯) ସ୍ୱେତେକ ସର ଯେ ନରେନ୍ଦ୍ର—O.L./1199 ପୋଥିପାଠ ।
(୩୦) ଏ ପାଦଟି O.L./1199 ପୋଥିରେ ନାହିଁ ।
(୩୧) ଏ ପାଦଟି O.L./1199 ପୋଥିରେ ନାହିଁ ।
(୩୨) 'ଏ ଛନ ପୁରେ ସେ ରହଇ' O.L./413 ପୋଥିପାଠ ।
(୩୩) ଏହି ପାଦଟି O.L./1199 ପୋଥିରେ ନାହିଁ ।
(୩୪) ଲେଖିଥିବ—O.L./1199 ।
(୩୫) ସେ ଶୀଳ—O.L./413 ପୋଥିପାଠ ।

| | | |
|---|---|---|
| ଯେମନ୍ତ କହୁ ବାସୁଦେବ | । ଯେ ସିନା ସେହୁଠାକୁ ଯିବ(୩୬) | ।୬୪। |
| ମୁଁ ପୁଣି ରଖିବ ତାହାକୁ | । ଶତ୍ରୁ କ କରବ ତାହାକୁ (୩୭) | ।୬୫। |
| ମୁଁ ଯାକୁ ଥିବ ରକ୍ଷାକର | । କ କର ପାରବ ଅଇର | ।୬୬। |
| ମୋ ପାଦେ ଥିବ ଯାର ଚତ୍ତ (୩୮) | । ତାକୁ କେ ଅଛୁ ସାମରଥ (୩୯) | ।୬୭। |
| ମୋତେ ବିଶ୍ୱାସ ଯେବେ ଜନ | । ତାକୁ କ କରପାରେ ଯମ (୪୦) | ।୬୮। |
| ମୋ ନାମେ ଯେହୁ ହେବ ସୁଖୀ | । ଭୂଜ ତଳରେ(୪୧) ତାକୁ ରଖି | ।୬୯। |
| ମୋ ନାମେ ନାହିଁ ଯାର ମେଳ | । ନଷ୍ଟେ ପୂରବ ତାର କାଳ | ।୭୦। |
| ମୋ ନାମେ ଯାର ଅବଶ୍ୱାସ | । ସେ ପ୍ରାଣୀ ନଷ୍ଟେ ଯିବ ନାଶ | ।୭୧। |
| ମୁଁ ପୁଣି ମୋ ଭକ୍ତ ଜନଙ୍କୁ | । ଶୂନ୍ୟେ ରଖିବ ନେଇ(୪୨)ତାଙ୍କୁ | ।୭୨। |
| ଏ ପଞ୍ଚ କୋଶର ଭିତର | । ବାରପା (୪୩) ମଣ୍ଡଳ ଆକାର | ।୭୩। |
| ଏମନ୍ତ ଶୁଣି ମନେ ତୋଷ | । ଭଣିଲେ ବାଲ୍‌ଗାଁ ଯେ ଦାସ(୪୪) | ।୭୪। |
| ଏହୁ (୪୫) ଦ୍ୱାରକା (୪୬)ଭୂମି ଯହିଁ | । ମୋ ଭକ୍ତେ ସମ୍ଭାଇବେ ତହିଁ | ।୭୫। |
| ଦ୍ରବ୍ୟ ସୁସଞ୍ଚ ଅଛୁ ଥାନ | । ଅଛଇ ନାନା ବୃକ୍ଷମାନ | ।୭୬। |
| ଆମ୍ବ, ପଣସ, କେନ୍ଦୁ, ଗୁଆ | । କଦଳୀ, ଜମ୍ବୁଲ (୪୭) ନଡ଼ିଆ | ।୭୭। |

---

(୩୬) ଏହୁ ପଦଟି O.L./413 ପୋଥିରେ ନାହିଁ ।

(୩୭) 'ଶତ୍ରୁ କ କରପାରେ ତାକୁ' O.L./413 ପୋଥିପାଠ ।

(୩୮) 'ଯେ ପାଦେ ଥିବ ମୋର ଚତ୍ତ'—O.L./1199 ପୋଥିପାଠ; ଏହାଦ୍ୱାରା ଅର୍ଥ ଅନର୍ଥରେ ପରଣତ ହେଉଛୁ ।

(୩୯) × × ତାହାକୁ କରବ ସାମର୍ଥ୍ୟ—O.L./1199 ପୋଥିପାଠ ।

(୪୦) ତାକୁ କର ବ ପାରୁ ଆନ—O.L./1199 ପୋଥିପାଠ ।

(୪୧) ଉପରେ—O.L./413 ପୋଥିପାଠ ।

(୪୨) ମୁହିଁ—O.L./1199 ପୋଥିପାଠ ।

(୪୩) ବାରପା ଅର୍ଥାତ୍ ଛନକୋଶ ଓସାରବଶିଷ୍ଟ ମଣ୍ଡଳାକାର କ୍ଷେତ୍ର ଶ୍ରୀକ୍ଷେତ୍ର ।

(୪୪) ଏ ପଦଟି O.L./1199 ରେ ନାହିଁ ଏବଂ ଏହୁଠାରୁ O.L./413 ଶେଷ ହୋଇଛୁ ।

(୪୫) ୭୫ ପଦଠାରୁ ଶେଷ ପର୍ଯ୍ୟନ୍ତ O.L./413 ପୋଥିରେ ନାହିଁ । ଏହୁ ଅଂଶତକ O.L./1199 ପୋଥିରେ ଅଧିକ ପାଠ ।

(୪୬) 'ବାରକା' ବୋଲି ମୂଳ ପାଠରେ ଅଛୁ ।

(୪୭) 'ଜାମ୍ବୁଲା' ମୂଳପାଠ ।

ଜାମ୍ବୁ, ନାରଙ୍ଗ, ଲେମ୍ବୁ, ଟଭା । ଦୂରକୁ ଦିଶୁଥିବ ଶୋଭା ।୭୮।
ମଲ୍ଲୀ, କେତକୀ, ଯାଈ, ଯୂଈ । ସେ ଦ୍ରବ୍ୟ ନାନା ବୃକ୍ଷେ ରହି ।୭୯।
ଦିବ୍ୟ ପାଚିଲା ସବୁ (୪୮) ଫଳ । ଉପରେ ହୋଇ ନଟୀକାଳ(୪୯) ।୮୦।
ଗଙ୍ଗା ଯେ ଗୋଦାବରୀ ତଟେ । ସେଠାରେ ହୋଇବୁ(୫୦)ଗୁପତେ ।୮୧।
ଯମୁନା ସରସ୍ୱତୀ ନଈ । ସେଠାରେ ଯାଉଛନ୍ତି ବହି ।୮୨।
ବହିବୁ ବସନ୍ତ ପବନ । ତହିଁ ରହିବେ ସର୍ବଜନ ।୮୩।
ଓଲଟ ବାରି (୫୧) ବୋଲି କରି । ଜପ କରିବେ ମନେ ଧରି ।୮୪।
ଯେମନ୍ତ ବୋଲି ମୋର ଭକ୍ତ । ସୁଖେ ବଞ୍ଚିବେ ଦିବାରାତ୍ର ।୮୫।
ଏକା (୫୨) ଅକ୍ଷର ବ୍ରହ୍ମଜ୍ଞାନ । ହୃଦେ ଚିନ୍ତିବେ ଭଗବାନ ।୮୬।
ଓଁକାର ଲେକାକାର ତହିଁ । ରାମ ଅଛି ଯେ ଗୁପ୍ତ ତହିଁ ।୮୭।
ଯେମନ୍ତେ ଯେହୁ ଥିବେ ଭଜି । କଳି କଲୁଷ ପାପ ତେଜି ।୮୮।
ଏକା ଅକ୍ଷର କରି ନାଶ । ଦେଖିବେ ଅନାଦି ପୁରୁଷ ।୮୯।
ଦୁଷ୍ଟ ଯେ ସନ୍ତ ଭିନ୍ନ ଭିନ୍ନ । ବାରି (୫୩) ରଖିବୁ ବେନିଜନ ।୯୦।
ପୁଣ୍ୟ (୫୪) ଉଜ୍ଜ୍ୱଳ ପାପୁ ହତ । ଆଗତ-ଭବିଷ୍ୟ ଭକତ ।୯୧।
ମୀନ ମାସରେ ନଷ୍ଟେ ହାଣ । ଶ୍ରୀମୁଖେ ବଚନ ପ୍ରମାଣ ।୯୨।
ଯେହୁ କରିବ ଉପହାସ । ନଷ୍ଟମ୍ୟେ ହୋଇବ ସେ ନାଶ ।୯୩।
ଟାହି (୫୫) କରିବେ ଯେଉଁ ଜନ । ଖଡ୍ଗେ ହୋଇବେ ଛେଦନ ।୯୪।
ଯେ ପାପ କରିଥିବ ସତ । ତାକୁ ଲାଗିବ ଯେହ୍ନୁ କୁନ୍ତ ।୯୫।
ଜ୍ଞାନୀଙ୍କ (୫୬) ମଳୟ ଚନ୍ଦନ । ହସି କହନ୍ତି ଭଗବାନ ।୯୬।

---

(୪୮) ତାଙ୍କ ଫଳ—ମୂଳପାଠ । (୪୯) ନଟୀକାଳ—ନଡ଼ିଆ ।
(୫୦) 'ହୋଇବୁ' ସ୍ଥାନରେ 'ରହିବୁ' ପାଠ ସମୀଚୀନ ହେବ ।
(୫୧) 'ଏଓଟ ବ୍ୟାରି' ବୋଲି ଏକ ଅର୍ଥହୀନ ଶବ୍ଦ ମୂଳପାଠରେ ରହିଛି ।
(୫୨) ଏକ ଅକ୍ଷର କିମ୍ବା ଏକାକ୍ଷର ହେବା ସମୀଚୀନ ଅର୍ଥାତ୍ ଓଁକାର ।
(୫୩) ବାରି—ପୃଥକ୍ ଭାବରେ ।
(୫୪) ପୂନ୍ୟଉଜଳ—ମୂଳପାଠ । (୫୫) ଟାହି—ଉପହାସ ।
(୫୬) ବାଲଗାଁ ଦାସ ବା ଦାସିଆଙ୍କୁ ଉପଦେଶ ଦେବାବେଳେ ଶ୍ରୀଜଗନ୍ନାଥ ଜ୍ଞାନବାନ୍ ଲୋକଙ୍କ ମହତ୍ତ୍ୱ ବିଶେଷ ଭାବରେ ପ୍ରଖ୍ୟାପନ କରିଛନ୍ତି; ଅର୍ଥାତ୍ ବ୍ରହ୍ମଜ୍ଞାନୀ ବାଲଗାଁ ଦାସ ଜନସାଧାରଣଙ୍କୁ ତତ୍ତ୍ୱଜ୍ଞାନୀ ହେବାକୁ ପରୋକ୍ଷରେ ଏଠାରେ ଉପଦେଶ ଦେଇଛନ୍ତି ।

| | |
|---|---|
| ବାଲଗାଁ (୬୭) ଦାସିଆ ଆଗତ | । କହୁଲେ ଦେବ ଜଗନ୍ନାଥ ।୯୭। |
| ପାଖରେ (୬୮) ବସି ପଞ୍ଚ ଗ୍ରନ୍ଥ | । ହସ୍ତେ ଲେଖିଲେ ଆନନ୍ଦ(୬୯) ।୯୮। |
| ଲେଖିଲେ ଆଗତ ଭବିଷ୍ୟ | । ସିଂହାସନରେ ପରବେଶ (୭୦) ।୯୯। |
| ସିଂହାସନରେ ଚଉଭୁଜ (୭୧) | । ଦାସିଆ ଗରବ ଶରଣ ।୧୦୦। |
| ଯେ ଅଧ୍ୟା ସତାଣୋଇ ପଦ (୭୨) | । ଶୁଣିବ ଲୋକଟି ପାଇବ ।୧୦୧। |
| ହେ ମନ ମୋର ପଦେ ଆଶ | । ବଉଦ ମିଛୁଆ ଯେ ଦାସ (୭୩) ।୧୦୨। |

---

(୬୭) ପ୍ରଥମ ଅଧ୍ୟାୟରେ ସ୍ପଷ୍ଟଭାବରେ ଲେଖାଅଛି ଯେ, ଶ୍ରୀଜଗନ୍ନାଥ ନିଜେ ଭକ୍ତ ଦାସିଆଙ୍କ ଜିଜ୍ଞାସା ମତେ ଆଗତ ଭବିଷ୍ୟ ଲେଖିଛନ୍ତି । ଖୁବ୍ ସମ୍ଭବତଃ ବାଲଗାଁ ଦାସ ନିଜର ଗର୍ବ ପରିହାର ତଥା ପୁସ୍ତକର ମାହାତ୍ମ୍ୟ ବୃଦ୍ଧି କରିବା ଅଭିଳାଷରେ ଏପରି ଲେଖିଛନ୍ତି ।

(୬୮) 'ପାଖର ଗ୍ରନ୍ଥ' ବୋଲି ମୂଳପାଠ । ଏଥିରୁ ଅର୍ଥ ସୁସ୍ପଷ୍ଟ ହୁଏନାହିଁ; ତେଣୁ 'ପାଖରେ ବସି' ପାଠ ହେବା ସମୀଚୀନ ।

(୬୯) ଏ ପୁସ୍ତକଟି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀହସ୍ତ ଲେଖା ବୋଲି କହି କବି ଭକ୍ତ-ଜନତା ମଧ୍ୟରେ ତା'ର ମହତ୍ତ୍ୱ ବୃଦ୍ଧି କରିଛନ୍ତି ।

(୭୦) କେବଳ ଆଗତ ଭବିଷ୍ୟ ଲେଖିବାଲାଗି ମହାପ୍ରଭୁ ଦାସିଆଙ୍କ ଘରକୁ ଆସି ପୁସ୍ତକ ଶେଷ ହେବାମାତ୍ରେ ଶ୍ରୀକ୍ଷେତ୍ରକୁ ଯାଇଥିଲେ ବୋଲି କହିଥିବାରୁ ପୁସ୍ତକର ପବିତ୍ରତା ବୃଦ୍ଧି ପାଉଛି ।

(୭୧) ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଚତୁର୍ଦ୍ଧାମୂର୍ତ୍ତିର ବର୍ଣ୍ଣନା ସମ୍ବନ୍ଧ ଥିଲେ ହେଁ ଏଠାରେ 'ସିଂହାସନରେ ଚଉଭୁଜ' ବୋଲି କବି ଲେଖିଛନ୍ତି ।

(୭୨) O.L./413 ତଥା O.L./1199 ଉଭୟ ପୋଥିର ସମ୍ମିଳିତ ଆଲୋଚନା କରି ଏଠାରେ ୧୦୩ ପଦ ଦିଆଯାଇଛି ।

(୭୩) O.L./1199 ପୋଥିର କେତୋଟି ଅଧ୍ୟାୟ ଶେଷରେ 'ମିଛୁଆ' ନାମ ମିଳୁଛି; ଏହା O.L./413 ପୋଥିରେ ନାହିଁ । ଖୁବ୍ ସମ୍ଭବତଃ ବଉଦ ଦାସ ବାଲଗାଁ ଦାସଙ୍କର ଶିଷ୍ୟ ଥିଲେ ଏବଂ କବିଙ୍କ ଉକ୍ତିକୁ ସେ ଲିପିବଦ୍ଧ କରିଥିଲେ କିମ୍ବା ପରବର୍ତ୍ତୀ କାଳରେ ବଉଦ ଦାସ ସମ୍ପୃକ୍ତ ପୋଥିଟି ନକଲ କରିବାବେଳେ ନିଜ ନାମର ଉଲ୍ଲେଖ କରିଛନ୍ତି ।

ଆଉ ଜନ୍ମରେ ନ ଜାଣିଣ । ଏ ଜନ୍ମେ ଭ୍ରମୁଅଛୁ ପୁଣ (୭୪) ।୧୦୩।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଶ୍ରୀ ଭଗବନ୍ ବାଲ୍ୟଗାଁ ଦାସିଆ ସମ୍ବାଦେ ଆଗତଭବିଷ୍ୟ କଥନେ ନାମ ପଞ୍ଚମ ଅଧ୍ୟାୟ । (୭୫) □□□

---

(୭୪) ପୂର୍ବଜନ୍ମର ସୁକୃତ ଅଭାବରୁ କବି ଏ ଜନ୍ମରେ ହୀନ ତଥା ଅଛୁତ କୁଳରେ ଜନ୍ମ ହୋଇଥିବାରୁ ଅନୁତାପ କରିଛନ୍ତି ।

(୭୫) ଏହି ଅଂଶଟି O.L./413ରେ "ଇତିଶ୍ରୀ ଭବିଷ୍ୟ ବ୍ରହ୍ମବିଦ୍ୟାୟା ବାଲ୍ୟଗାଁ ଦାସ ଶ୍ରୀକୃଷ୍ଣ ସମ୍ବାଦେ ନାମ ପଞ୍ଚମୋ ଅଧ୍ୟାୟ" ବୋଲି ଲେଖାଅଛି ।

# ଭକ୍ତମାଳିକା (୨)

## ପ୍ରଥମ ଅଧ୍ୟାୟ

କହନ୍ତି ବାଲିଗାଁ ଦାସେ ଶୁଣିମା ଗୋସାଇଁ
ଭକ୍ତଙ୍କ ଜନ୍ମଚରିତ କହିବା ବୁଝାଇଁ ।୧।
ଶ୍ରୀ ଅତିବଡ଼, ଯଶୋବନ୍ତ, ନାମ ବଳରାମ,
ଅଚ୍ୟୁତ, ଅନନ୍ତ ଶିଶୁ ପଞ୍ଚ ଶାଖା ଜାଣ ।୨।
ମନ୍ତ୍ରଯନ୍ତ୍ର ଉପାସିକ ଉପଦେଶ ଧାମ,
ପ୍ରଣାଳୀ ବିଳାସ କରି କହିବା ପ୍ରମାଣ ।୩।
ଚଉରାଶି ମନ୍ତ୍ରଯନ୍ତ୍ର ଉପାସିକ ଯେତେ,
ନାମ ମୂଳ ବର୍ଣ୍ଣ ହମିତ ଓଁକାର ସହିତେ ।୪।
ଶ୍ରୀ ପୁରୁଷୋତ୍ତମ ନୀଳଗିରି ଗୁଣ୍ଡି ଚିନଗର,
ବ୍ରହ୍ମା ରୁଦ୍ର ଦେବତା ବୃନ୍ଦ ଏକଇ ଅଙ୍ଗର ।୫।
ପୁଣ ପୁଣ ନମସ୍କାର କରନ୍ତି ଦାସେ ଜାଣ,
ଆଦି ଅନାଦି ବିଶ୍ୱବାସ ତୁମ୍ଭେ ନିରଞ୍ଜନ ।୬।
ନମସ୍ତେ ବାସୁଦେବାୟ ନମସ୍ତେ ବିଶ୍ୱରୂପ,
ନମସ୍ତେ କୂର୍ମରୂପ ବରେହା ନୃସିଂହ ସରୂପ ।୭।

---

(୧) ପ୍ରସ୍ତୁତ ପୋଥିଟି ରାଜ୍ୟସଂଗ୍ରହାଳୟରେ ଏକମାତ୍ର ପୋଥି ଏବଂ ଏଥିରେ ବାଲିଗାଁ ଦାସଙ୍କ ସହିତ ପଞ୍ଚସଖାଙ୍କ ଆଲୋଚନା ଓ ଶ୍ରୀଜଗନ୍ନାଥ ଦାସଙ୍କଠାରୁ ତାଙ୍କର ଦୀକ୍ଷାଗ୍ରହଣାଦି ବିଷୟ ଲିପିବଦ୍ଧ ହୋଇଥିବାରୁ ଆଲୋଚକମାନଙ୍କ ପକ୍ଷରେ ଏହା ଗୋଟିଏ ମୂଲ୍ୟବାନ ଅଧ୍ୟାୟ । ଏହି ଅଧ୍ୟାୟରୁ ଦାସିଆଙ୍କ ଭକ୍ତିଭାବନା ବିଷୟରେ କେତେକ ଆଭାସ ମିଳେ ଏବଂ ତାଙ୍କ ସମ୍ବନ୍ଧରେ ଥିବା କେତେକ ଭ୍ରାନ୍ତଧାରଣାର ନିରାକରଣ କରାଯାଇପାରେ । ସମ୍ପୂର୍ଣ୍ଣ ପୁସ୍ତକର ବିଷୟବସ୍ତୁ ତଥା ଆବଶ୍ୟକୀୟ ଉଦ୍ଧୃତି ଆଲୋଚନାରେ ଦିଆଯାଇଥିବାରୁ, କେବଳ ଏହି ଅଧ୍ୟାୟଟିରେ ପାଠ ଏଠାରେ ପରିଶିଷ୍ଟରେ ପ୍ରଦତ୍ତ ହେଲା ।

ନମସ୍ତେ ବାମନରୂପ ପ୍ରଶୁ ଶସ୍ତ୍ରଧାରୀ,
ନମସ୍ତେ ଶ୍ରୀରାମଲକ୍ଷଣ ସୀତ୍ୟା ଅବତରି ।୮।
ହଲ-ରାମ ବଳ-ରାମ ଶରଣ ମୋହର,
କଲ୍‌କୀରୂପକୁ ମୋର କୋଟି ନମସ୍କାର ।୯।
ଆଜ ମୋ ପୁତ୍ରଙ୍କୁ ବିଜୟେ କରିବେ ଭକ୍ତଗଣ,
ତୁମ୍ଭ ଶ୍ରୀଚରଣ ବିନୁ ନ ଜାଣଇ ଆନ ।୧୦।
ଓଁ ମନ୍ତ୍ର ମାତା ମୋର ସେ ଅଣ ମୋର ପିତା,
ଅକ୍ଷରଙ୍କ ଗଣେ ମୁଁ ତୁମ୍ଭଙ୍କୁ କରିଛୁ ଗଣିତା ।୧୧।
ବାଉରୀ ଅକ୍ଷର ଅଟଇ ସ୍ୱେ ପିତା,
ଏକଇ ବାଉରୀ ନତେ୍ୟ ଜପୁଛୁ ବିଧାତା ।୧୨।
ଦଶ ଷଟକ୍ଷର କରି ଭାବୁଅଛୁ ତୋତେ,
ତେଣୁ ଲକ୍ଷ୍ମୀନାରାୟଣ ଅଙ୍ଗଟି ଯୁଗତେ ।୧୩।
ମନର ସେ ମୂଳମନ୍ତ୍ର ଭଜନା କରଇ,
ଶ୍ରୀ ଅତିବଡ଼ (୨) ଗୁରୁ ଯାହା ଥିଲେ ମୋତେ କହି ।୧୪।
ଅ.ହନ ସେ ଶୁକ୍ତି ମୋର କରନ୍ୟାସ ନାହିଁ,
ପ୍ରେମାରୂପା ବଳାସିନୀ ସୁଭଦ୍ରାଙ୍କୁ ଧ୍ୟାୟି ।୧୫।
ଅର୍ଦ୍ଧ ରାଧା ନାମ ବୋଲି ଜାଣିଥିଲି ଚିତ୍ତେ,
ରାମ ଅର୍ଦ୍ଧ ଅର୍ଦ୍ଧେ ବୋଲି ଜାଣିଲି ଓଁ ମତେ ।୧୬।
ଏକାକ୍ଷର ଦଶାକ୍ଷର ବାହାରେ ବାର୍ଣ୍ଣିଲି,
ହ୍ରିଁ ବୀଜ ପଞ୍ଚମାତ୍ରା ଅନାହତରେ ରହିଲି ।୧୭।
ନ ବୁଝିଲି ବେଦ ଚକ୍ଷୁ ନ କଲିଟି ଜପ,
ତୁମ୍ଭ ସ୍ୱରୂପ ନାଥ ମାପିଲି ଅମାପ ।୧୮।
ସ୍ତୁତ ଭାବ ଧ୍ୟାନ ଜାଣି ପ୍ରଭୁ ବିଜେ କଲେ,
ବାଲିଗାଁ ଦାସଙ୍କ ମତେ ଯାଇଣ ମିଳିଲେ ।୧୯।

ଶ୍ରୀ ଭଗବାନ ଉବାଚ—

ବୋଲଇ ଶ୍ରୀହରି ଶୁଣ ହେ ଦାସେ କମ୍ପାଇଁ ଲୋଡ଼ିଲ ମୋତେ ।
କେଉଁ କଥା ତୁମ୍ଭେ ଭାବନା କରୁଛ କହିବ ସେ ଶୁଦ୍ଧଚିତ୍ତେ ।୨୧।

---

(୨) ଅତିବଡ଼ୀ ଜଗନ୍ନାଥ ଦାସ ପଞ୍ଚସଖାଙ୍କ ମଧ୍ୟରେ ଅନ୍ୟତମ ସାଧକ ଥିଲେ ।

ଦେଖିଣ ବାଲିଗାଁ ଦାସେ ବହୁତ ପ୍ରଲମ୍ବ କଲେ ।
ଜୟଶଲ ଜୟଶଲ ବୋଲି ଭୂମୁରେ କର ଯୋଡ଼ିଲେ ।୨୧।
ବୋଇଲେ ମହାପ୍ରଭୁ ଶୁଣ ନାରାୟଣ,
ବାଙ୍କି ମୁହାଣକୁ ଗଲି ଦର୍ଶନ କରିଣ ।୨୨।
ବାହୁଡ଼ି ଅଇଲି ଅର୍ଦ୍ଧ ଯୋଷମାଙ୍କ ପ୍ରାୟେ,
ଚଉଷଠି ଭକ୍ତଗଣ କରନ୍ତି ବିଜୟେ ।୨୩।
ସମସ୍ତଙ୍କୁ ଦେଖି ମୁଁ କଲି ନମସ୍କାର,
ବଳରାମ ପୁଚ୍ଛିଲେ ଯେ ଆମ୍ଭର ଆଗର ।୨୪।
ମୋତେ ବଳରାମ ବୋଇଲେ ଯେ ତୁମ୍ଭ ନାମ କସ,
ମୁଁ ବୋଇଲି ପିତା ଦେଲେ ବାଲିଗାଆଁ ଦାସ ।୨୫।
ଅନନ୍ତ ଦ୍ୱାରକା ଆମ୍ଭେ ତୁମ୍ଭଠାକୁ ଯିବୁଁ,
ଆଗ ପଛ କରି ମଠ ଦେଖିଣ ଆସିବୁ ।୨୬।
ମୁଁ ବୋଇଲି ବାଉରିରେ ଜନ୍ମ ଉତ୍ପତ୍ତି
ନ ଜାଣଇ ପାଠଶାଠ ନୁହଇଁ ଭଗତ ।୨୭।
ସମସ୍ତ ଗୋସାଇଁ ଯେବେ ଯିବେ ମୋର ପୁର,
(୩) ମହାଖଲା କରିବ ମୋ ମଠର ଆଗର ।୨୮।
ଯାଅ ଯା ବୋଲିଣ ପଞ୍ଚୁ ଶାଖା ଯେ ବୋଇଲେ,
ସତ୍ୟବନ୍ତ କଥା କାଲି ପଚାରିବା ଥରେ ।୨୯।
ଏହା ଶୁଣି ମନେଣ ଭାବିଲି ଆପଣଙ୍କୁ,
ଯାହା ଅଜ୍ଞା କରିବେ ମୁଁ ପୁଚ୍ଛିବ ପ୍ରଭୁଙ୍କୁ ।୩୦।
ରାଜସ ଭକ୍ତଗଣ ପଞ୍ଚଶାଖା ଯେତେ,
ତାହାଙ୍କର ଆଗେ କସ କହିବ ଅତ୍ୟନ୍ତେ ।୩୧।
ଶ୍ରୀହରି ବୋଲନ୍ତି ଦାସେ କହିବା ବିସ୍ତର,

× × ×

ତୁମ୍ଭର ଦାସି ମନକୁ ବଢ଼ିବେ ସେ ଭକ୍ତ ବାଦରେ ବିସ୍ତର
ଶ୍ରୀସନ୍ତକୁ ଭେଦ ଠାକୁରାଣୀ-ଯନ୍ତ୍ର କହ ବୋଲିବେ ଆଗର ।୩୨।

---

(୩) ଯେଉଁଠାରେ ପଞ୍ଚସଖାଦି ଭକ୍ତଗଣ ମିଳି ତତ୍ତ୍ୱ ଆଲୋଚନା କରିଥିଲେ ତାହା 'ମହାଖଲା' ନାମରେ ପ୍ରସିଦ୍ଧ । ବାଲିଗ୍ରାମର ମେଳିଣ ପଦା ମହାଖଲାରୂପେ ଲୋକମୁଖରେ ପ୍ରସିଦ୍ଧି ଅର୍ଜନ କରିଛି ।

ତୁହି ଏବେ କସ ବସ୍ତୁର କଉତୁ କ ପାଠ କହିବୁ ତାଙ୍କୁ ।
ସେ ପଞ୍ଚସଖା ମୋ ଦେହୁଁ ଜନମ ବାକ୍ୟଦେଖ ସାହା ତାଙ୍କୁ ।୩୩।
କହନ୍ତି ବାଲଗାଁ ଦାସେ ଶୁଣିମା ହେ ପ୍ରଭୁ ମୁଁ କସ କହିବ ମୂଢ଼ ।
ସେ ତୁମ୍ଭର ଯେଣୁ ଭଗତବୃନ୍ଦ ସେ ସବୁରେ ପ୍ରକାରେ ବଡ଼ ।୩୪।
ଅତିବଡ଼ ଜଗନ୍ନାଥେ ମୋର ଗୁରୁଦେବ ଅଛନ୍ତିଟି ଜାଣ ।
ତାଙ୍କ ଚରଣକୁ ଶରଣ ମାଗିବ କହିବ ଯାହା ପ୍ରମାଣ ।୩୫।
ଆହୁର କଥାଏ ମନରେ ଅଛଇ ଡାକିବ ଯେବେ ତାହାଙ୍କୁ ।
କମଳା ବିମଳା ଦୁଇଜଣ ମୋର ସଖା ଯେ ମୋତେ ହେବାକୁ ।୩୬।
ଅଷ୍ଟସଖୀଗଣ ମୋହୋର ଥାଣ ଡାକିଲ ମାନେ ଶୁଣିମେ ।
ଚଉଷଠୀ ଦାତା ଚଞ୍ଚଳାରମଣ ସେ ଯେବେ ମୋ ହୃଦେ ଥିବେ ।୩୭।
ସାକ୍ଷାତରେ ଯେବେ ତୁମ୍ଭଙ୍କୁ ପାଇଲି ପ୍ରଭୁ ପର ଜାଣେ ନାହିଁ ।
ଚଉଦ ଭୁବନେ ବୁଲି ମୁଁ ଅଇଲି ସକଳ ଘଟେ ଗୋସାଇଁ ।୩୮।
ବାଲଗାଁ ଦାସଙ୍କ ମନ ସେ ଜାଣିଲେ ନାମ ଗୋଟି ଅନ୍ତର୍ଯ୍ୟାମୀ ।
ବୋଇଲେ ହେ ଦାସେ କହିବା ବିଶ୍ୱାସେ, ଗୁପତ ଗୀତା କାହାଣୀ ।୩୯।
କାଲି ପଞ୍ଚଶାଖା ପ୍ରଭାତୁଂ ଆସିବେ, ମନ ବୁଝିବେ ତୁମ୍ଭର ।
ମୋତେ ନୀଳଚକ୍ରେ ଲୁଚାଇ ଆସିବେ, ପଚାରିବେ ତୋ ଆଗର ।୪୦।
ଉତ୍ତମ ଦ୍ରବ୍ୟ ଯେବା ତୋତେ ମିଳିବ ତାହା ତୁହି ଖୁଆଇବୁ ।
ଉତ୍ତମ କରଣ ଆନନ୍ଦ ହୋଇଣ ସୁବାସ-ନୀର ସିଞ୍ଚିବୁ ।୪୧।
ପଚାରିବେ ଯେତେ ମନ୍ତ୍ରର ବସ୍ତୁର, ଠିକଣା ମୋହୋର ସ୍ଥାନ ।
ପ୍ରେମରୂପା ଅଙ୍ଗେ ତୋହୋର ଅଙ୍ଗର, ଦେଖାଇବୁ ସ୍ଥାନମାନ ।୪୨।
ଚଉରାଶି ମନ୍ତ୍ରଯନ୍ତ୍ରରେ ଭେଦିବ, ଅନାହତ ସେବା କର ।
ତାହାକୁ ଯେବେ ତୁ ଭାବନା କରିବୁ, ଚିତ୍ତ ଥିବୁ ଦୃଢ଼ କରି ।୪୩।
ଆଜ୍ଞାକୁ ଯେବେ ତୁ ସେବକ ହୋଇବୁ, ସବୁ ଦେବତା ହିଁ ମୁହିଁ ।
ଏକାକ୍ଷର ଲକ୍ଷ ବାନ୍ଧି ଥିବୁ ହୃଦେ, କ୍ଲୀଂ ପଞ୍ଚ ମାତ୍ରା ତହିଁ ।୪୩।
ଓଁ ମନ୍ତ୍ର ଓଁକାର ମନ୍ତ୍ରର ବସ୍ତୁର, ଅନାହତ ଥିବୁ ଧ୍ୟାଇ ।
ଯେଉଁ ଉପାସନା ମନ୍ତ୍ରରେ ଡାକିବୁ, ମୋର ନାମ ହେତୁ ଦେଇ ।୪୪।
ତୁହି ବସିଥିବୁ ଶ୍ରୀଯନ୍ତ୍ର ସ୍ଥାପିଣ, ଠିକଣା ତୋତେ କହିଲି ।
ତୋହୋର ହୃଦରେ ବାର ମାତ୍ରା ଭେଦ, ଛଡ଼ ଚକ୍ର ଦେଖାଇଲି ।୪୬।

କ୍ଲୀଂ ହ୍ରୂଂ ଶ୍ରୀଂ ଓଁ

ଏ ଚାରି ଅକ୍ଷର ମନ୍ତ୍ରର ବିକଯ୍ୟେ, ବିନା ଅବନା ନୁହନ୍ତି ।
ଏହି ଚାରିଙ୍କି ଯେ ବୋଲଇ ଯ୍ୟେ, କରିବୁ ଛାଡ଼ିବ ସକଳ ଭ୍ରାନ୍ତି ।୪୭।

ଶ୍ରୀଂ ଯନ୍ତ୍ରଗୋଟି ଏ ମନ୍ତ୍ର ଓଁ କାର, ମୂଳ ଶୂନ୍ୟ ଲକ୍ଷ୍ୟେ କର ।
ଶିଶୁ ଅନନ୍ତ ପଚ୍ଛରିବେ ତୁମ୍ଭଙ୍କୁ, ଅନାଦି ସୂର୍ଯ୍ୟ ବିଗ୍ରହ ।୪୮।
ଯଶୋବନ୍ତ ମହାଦେବ ତୋତେ, ରାଧା ଅଙ୍ଗ ଅଙ୍ଗ ପଚାରିବେ ।
ଦେବତାମାନଙ୍କ ଅଙ୍ଗ କରନ୍ୟାସେ, ଯେ ଉପାସନା ବିଚାରିବେ ।୪୯।
ମୋହୋରିକ ପଞ୍ଚ ଅଙ୍ଗନ୍ୟାସ କରି ପଢ଼ିବୁ ତାହାଙ୍କ ଆଗେ ।
ପାଦଠାରୁ କଣ୍ଠପାଏ ବାଣ୍ଟି ନେବୁ ଓଁ କାର ଭେଦିବୁ ଯେବେ ।୫୦।
ତୋହୋର ଦେହରେ ଦେବତା ସମସ୍ତେ ବସି ଅଛନ୍ତି ଯତନ ।
ସ୍ଥାନମାନଙ୍କର ହାତ ମାରିଦେବୁ ଗାୟତ୍ରୀ ବିଧି ସମାନ ।୫୧।
ନୀଳକଣ୍ଠଠାରୁ ବ୍ରହ୍ମମନ୍ତ୍ର ଗୋଟି ସେହିମନ୍ତ୍ର ସାଧିବୁ ତୁହି ।
ଜପ ଯଜ୍ଞ ବ୍ରତ ତୀର୍ଥ ପାଦ ପାଣି ଚକ୍ଷୁ କର୍ଣ୍ଣ ଜିହ୍ୱା ନାସା ନାହିଁ ।୫୨।
ବ୍ରହ୍ମ ସେହିକାଳର ଜୀବ ପରମର ଯୋନି ଅଯୋନି ନୁହଇ ।
ନିରାକାର ଯାର ଆକାର ଅଟଇ ଆକାଶ ଅଟଇ ଭାଇ ।୫୩।
ଓଁ ମିଛ ତାହାର ଭଗ୍ନୀ ଅଟଇ ତିନି ମୂର୍ତ୍ତି ସେହିକ ଦେବା ।
ଦେବ-ନାଶନ ବଟ ଯେଉଁ ଠାବରେ ସକଳ ଦେବଙ୍କ ପ୍ରଭା ।୫୪।
ଚଉବନକ୍ଷର ମାନ ଯେ ଅଟଇ ସକଳ କଥାରେ ସନ୍ଧି ।
କୃଷି-କାର୍ଯ୍ୟ ଯେସନ୍ତେ ବହନ ଧରଇ ଯାବତ ବନ୍ଧନ ବାନ୍ଧି ।୫୫।
ଭୂମି ସେ ସେହିକ ବିହନ ଯାକ ପାଗରେ ବନ୍ଧନ ବୁଣଇ ।
ପାଚିଲାବେଳକୁ କଳା ଧଳା ଧାନ ବାରିଣ ସେହୁ କାଟଇ ।୫୬।
ସବୁ ଧାନ ମିଶି ଏକ ଅନ୍ନ ସିନା ଅନ୍ନ ତ ଜୁଦା ନୁହଇ ।
ନାମ ଭିନ୍ନ ଭିନ୍ନ ମୋହୋର ସାମାନ୍ୟ ବ୍ରହ୍ମ ସେହିକାକ୍ଷର ମୁହିଁ ।୫୭।
ଚଉରାଶି ମନ୍ତ୍ର ଯନ୍ତ୍ର ହିଁ କହିଲି ସାଧି ପାରିବୁ କି ତୁହି ।
ସେହି ମନ୍ତ୍ର ମାନଟି ଅମୂଲ୍ୟ ଭଣ୍ଡାର ନ କହିବୁ ଆଉ କାହିଁ ।୫୮।
ଚଉଷଠି ଶାସ୍ତ୍ର ଭଗତମାଳିକା ଦେବାଦେବୀ ଛନ୍ତି ଯେତେ ।
ପଞ୍ଚ ଶାଖା ଅଙ୍ଗୁ ଜନ୍ମ ହୋଇଛନ୍ତି ନାମ କହିଦେବା ତୋତେ ।୫୯।
କାଲି ପ୍ରଭାତରେ ଦର୍ଶନ କରିବୁ ଭଗତ- ଜନ ମୋହର ।
ଅବତାର ମାନ ଜଳେ ଦେଖାଇବୁ ଭୁବନ ଚେତ ତୋହୋର ।୬୦।
ବଳରାମ ଦାସେ ଅନନ୍ତ ଅଚ୍ୟୁତ ଜଗନ୍ନାଥ ଯଶୋବନ୍ତ ଗଲେ ।
(୪) ହରି ଦ୍ୱାରିକା ସେହି ବାଲିଗାଁ ମଠରେ ନାମ ସ୍ମରଣ ଡାକିଲେ ।୬୧।

---

(୪) ହରି ଅର୍ଥାତ୍ ହରିଦାସ, ଦ୍ୱାରିକା ଅର୍ଥାତ୍ ଦ୍ୱାରିକା ଦାସ ଉଭୟ ଭକ୍ତକବି ଦାସିଆଙ୍କ ସମସାମୟିକ ଥିବାର ଜଣାଯାଏ; କିନ୍ତୁ ଏ ଦୁଇଜଣ ପଞ୍ଚସଖାଙ୍କର ସମସାମୟିକ ନୁହନ୍ତି ।

ପମାର ମାର ସୁବାସ ଗନ୍ଧ ପୁଷ୍ପ ଆସନ ତରଣ ଦେଲେ ।
ମହାଖଳାଠାରେ ବସି ସବ-ସାଧୁ ନାମ ଗୋଷ୍ଠୀ କଗ୍ରଲେ ।୬୨।
ବାଲିଗାଁ ଦାସେ ବଳରାମ ଦାସଙ୍କୁ କଲେ ଦଶଅବତାର ଦେଖାଇଲେ ।
ବୋଇଲେ ହେ ଦାସେ ପ୍ରଭୁ କାହିଁ ଛନ୍ତି, ଆମ୍ଭେ ଦେଖୁନାହିଁ ଭଲେ ।୬୩।
ଅନନ୍ତ ଯଶୋବନ୍ତ ଅଚ୍ୟୁତ, ଏହୁ ଦ୍ୱାରକାରେ ଥିଲେ ।
ଯଶୋବନ୍ତ ମାଲଚନ୍ଦକୁ ଗ୍ରହିଁଣ, ଲଙ୍କେ ହେବୁ ତହିଁ କଲେ ।୬୪।
ବୋଇଲେ ହେ ଦାସେ ଜଲେ ବୁଡ଼ି ମାସେ, ତୁମ୍ଭେ ହେ ଗୋଟିଏ ଭକ୍ତ ।
କ କ କରମତ ତହିଁକ ଯନ୍ତ ମନ୍ତ, ଜାଣ ସେହି ଆଦ୍ୟପ୍ରାନ୍ତ ।୬୫।
ଦାସେ ଯେ ବୋଇଲେ ଶୁଣିମା ଗୋସାଇଁ, ମୁଁ ହୀନ ପାମର ଛାର ।
ମୁଁ କସ କହିବ ତୁମ୍ଭ ଶ୍ରୀ ଛାମୁରେ, ସନ୍ଥଜନଙ୍କ କଙ୍କର ।୬୬।
ତୁମ୍ଭେ ସାଧୁ-ସନ୍ଥ ମହନ୍ତ-ଜନ ଯେ, ବଡ଼ ଅନ୍ୟାୟେ ତ କଲ ।
ଶ୍ରୀ ମଲଚନ୍ଦରେ ଖଗ୍ରରେ ପ୍ରଭୁଙ୍କୁ, ବସାଇ ତୁମ୍ଭେ ଅଇଲ ।୬୭।
ବିଶ୍ୱରୂପ ରୂପ ପଦ୍ମନୟନରୁ, ବହୁଅଛି ଅଶ୍ରୁଜଳ ।
ମାଲକନ୍ଦରରେ ନେଇ ବିଜେ କଗ୍ଅ, ନତ୍ୟ ହେଉଛି ଉତ୍ତର ।୬୮।
ସ୍ୱୟଂ କମଳାମା ବିଜେ କରଛନ୍ତି, ନବ ଜଳଧର ଦେହୀ ।
ଶ୍ରୀ ବିମ୍ବ ଅଧରୁ ତ୍ରମଫାଳ ଗଳ, ଶୁଖି ଯାଉଅଛି-ଦେହୀ ।୬୯।
ଏ ବଚନ ଶୁଣି ପଞ୍ଚୁଶାଖା ଭକ୍ତ, ଅକତ ହୋଇ ରହିଲେ ।
ନ ଜାଣି ପ୍ରଭୁ ଜଗନ୍ନାଥ ଦାସେ ଅତିବଡ଼ ଶାଢ଼ୀ ଦେଲେ ।୭୦।
ଜଗନ୍ନାଥ ଦାସଙ୍କୁ ବାଲିଗାଁ ଦାସ, ଗୁରୁଶିକ୍ଷା ଝାଣ କଲା ।
ରାଧାପ୍ରେମରୂପା ପ୍ରେମରସଭରେ ପ୍ରେମ ବ୍ରହ୍ମଙ୍କୁ ଚିହ୍ନିଲେ ।୭୧।
ଅତିବଡ଼ ଜଗନ୍ନାଥଙ୍କ ଶିକ୍ଷାରୁ ବାସନା ହୋଇଲା ଜାତ
ପୂର୍ବ ସୁକୃତରେ କିଛୁ ପୁଣ୍ୟ ଥିଲା ପ୍ରକାଶ ହୋଇଲା ମୁକ୍ତ ।୭୨।
ଆସ ହେ ଦାସେ ବସ ହେ ପାଶେ କହନ୍ତି ମନ୍ତ୍ର ବଗ୍ରର ।
ମହାପ୍ରଭୁ ମାଲକନ୍ଦରେ ବିଜୟେ ନାମ କରନ୍ତି ଉଦ୍ଧାର ।୭୩।
କହନ୍ତି ବାଲିଗାଁ ଦାସେ ଶୁଣିମା ଗୋସାଇଁ ମୁଁ କସ କହିବ ନାମ ।
ଯେବଣ ନାମକୁ ହର ବ୍ରହ୍ମା ଦେବ ଚନ୍ଦ୍ର ସୂର୍ଯ୍ୟ କରେ ଧ୍ୟାନ ।୭୪।
ଓଁକାର ପରମ ହେଜ ହେ ସତତ ମୂଳମନ୍ତ୍ରେ ଦିଅ ମନ ।
ମୂଳମନ୍ତ୍ର ଏକାକ୍ଷର ଗୋଟିକରେ ବ୍ରହ୍ମ ଯେକାକ୍ଷର ଚିହ୍ନ ।୭୫।
ବାଲିଗାଁ ଦାସଙ୍କ ବଚନ ଶୁଣିଣ ପଞ୍ଚୁ ଶାଖାୟେ ମଉନ ।
ଚୌଷଠି ମହନ୍ତ ପଞ୍ଚୁଶାଖା ମିଳି ଶାଢ଼ୀ ବାନ୍ଧଦେଲେ ଜାଣ ।୭୬।

ପଞ୍ଚଶାଖାଙ୍କେ ସମସ୍ତ ସାଧୁ ମିଳି ଷୋଡ଼ଶକୁ ବିଜୟେ କଲେ ।
ପ୍ରଥମ ଅଧ୍ୟାୟ ସମ୍ପୂର୍ଣ୍ଣ ହୋଇଲା ବାଲିଗାଁ ଦାସ କହିଲେ (୫.୫) ।୭୭।

ଇତି ଶ୍ରୀ ଅ.ଗତ ଭବିଷ୍ୟ ବାଲିଗାଁ ଦାସଙ୍କ
ଭକ୍ତମାଳିକା ପଞ୍ଚଶାଖାଙ୍କ ବଚନ-ନିର୍ଣ୍ଣୟ-
କଥନେ ନାମ ପ୍ରଥମୋଧ୍ୟାୟ । □□□

---

(୫) ଚୌଷଠୀ ମହାନ୍ତ, ପଞ୍ଚସଖା ପ୍ରଭୃତି ମିଳି ବାଲିଗାଁ ଦାସଙ୍କୁ ସିଦ୍ଧସାଧକ ରୂପେ ସ୍ୱୀକାର କରିଥିବା ଘଟଣା ଉଲ୍ଲେଖ କରି ଭକ୍ତକବି ଦାସିଆ ନିଜ ରଚନା ଓ ସ୍ୱୀୟ ସାଧକପଣର ମହତ୍ତ୍ୱ ପ୍ରକାଶ କରିଛନ୍ତି ।

# ପରିଶିଷ୍ଟ

ଭକ୍ତକବି ଦାସିଆ ବାଉରି ବା ବାଲଗାଁ ଦାସଙ୍କ ନାମରେ ଭଣିତ 'ଆଗତ ଭବିଷ୍ୟ' ଓ 'ଭକ୍ତମାଳିକା (ପ୍ରଥମ ଅଧ୍ୟାୟ) ପ୍ରସ୍ତୁତ ପୁସ୍ତକରେ ପ୍ରଦତ୍ତ ହୋଇଛି । ଲେଖକ 'ବାଲଗାଁ ଦାସ ସ୍ମୃତି କମିଟି'ର ସମ୍ପାଦକ ଶ୍ରୀ କେଳୁଚରଣ ଦାସଙ୍କ ସହିତ ବାଲଗାଁ ଯାଇ ଦାସିଆଙ୍କ ସ୍ମୃତିପୀଠ ଓ ଆଖପାଖରେ ଥିବା ଦାସବଂଶର ଲୋକମାନଙ୍କ ସହିତ ଆଲୋଚନାର ତଥା ସେମାନଙ୍କ ନିକଟରେ ଗଚ୍ଛିତ ଥିବା ତାଳପତ୍ର ପୋଥିଗୁଡ଼ିକ ପରୀକ୍ଷା କରିବାର ସୁଯୋଗ ପାଇଥିଲି । ସେହି ଅବସରରେ ପୁରୀ ଜିଲ୍ଲାର ଡେଲଙ୍ଗ ଥାନା ଅନ୍ତର୍ଗତ ବୋଳକଣା ଗ୍ରାମ ନିବାସୀ ଦାସବଂଶର ଦାୟାଦ ଶ୍ରୀ ଚନ୍ଦ୍ରାମଣି ଦାସଙ୍କଠାରୁ ସଂଗ୍ରହ କରାଯାଇଥିବା ଗୋଟିଏ 'ଆଗତ ଭବିଷ୍ୟ ଚଉତିଶା' ଶ୍ରୀ କେଳୁଚରଣ ଦାସଙ୍କଠାରୁ ପାଇଥିଲି । ସେତେବେଳକୁ ପ୍ରସ୍ତୁତ ପୁସ୍ତକର ମୁଦ୍ରଣ ପ୍ରାୟ ଶେଷ ହୋଇଯାଇଥିବାରୁ ଚଉତିଶାଟି ଏଠାରେ ପ୍ରଦତ୍ତ ହୋଇଛି ।

କରି ନିବେଦ୍ୟ ଗ୍ରହଣ ଲେଖୁଛି ଡାକବଚନ (୧),
କଳି ଅନ୍ଧକାର ହୋଇବ ମହୀର,
ବିବେକ ରହିବ ନାହିଁ ।

ଖଚୁଆ ଲଞ୍ଚୁଆ ଲୋକ ହୋଇବେ ଅପାର,
କ୍ଷିତ୍ରପତ୍ର (୨) ହୋଇ ନ ରହିବେ କେହି,
ଅରାଜକ ହେବ ମହୀ । ୧ ।

---

(୧) ଡାକରୃଷିବଚନ ଶୀର୍ଷକ କେତେକ ପଦ ଓଡ଼ିଆରେ ଦେଖିବାକୁ ମିଳେ । ପ୍ରସ୍ତୁତ ଚଉତଶାରେ ପ୍ରଦତ୍ତ ପଦଗୁଡ଼ିକ ଡାକରୃଷିବଚନ ପରି ହୋଇଥିବାରୁ କବି ଏପରି ନାମକରଣ କରିଛନ୍ତି ।

(୨) 'ଖ' ପରିବର୍ତ୍ତେ 'କ୍ଷ' ବସାଇ ପଦ ରଚନା କରିଯିବା ପ୍ରଥା ଚଉତିଶା ନିୟମରେ ଦେଖାଯାଏ । ଉଦାହରଣ ସ୍ୱରୂପ-'କ୍ଷୀର ସଙ୍ଗେ ପ୍ରାଣ ଶୋଷିଲେ ନାଶଗଲି ପୂତନା' କବି ଦାସିଆଙ୍କ ସମୟରେ ମୋଗଲମାନଙ୍କ ଆକ୍ରମଣ ଯୋଗୁଁ କ୍ଷେତ୍ରପତି ଶ୍ରୀଜଗନ୍ନାଥ ଶ୍ରୀମନ୍ଦିର ଛାଡ଼ି ଅନ୍ୟତ୍ର ରହିଥିଲେ ଏବଂ ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବ ମଧ୍ୟ ବିଭିନ୍ନ ପଡ଼ୋଶୀ ଇଲାକାରେ ଆତ୍ମଗୋପନ କରିଥିଲେ ।

ଗାୟତ୍ରୀ ଛାଡ଼ିବେ ଦ୍ୱିଜ, ଗାରଡ଼ି (୩) କରିବେ ବୀଜ,
ଗୁରୁ ଆଗେ ଶିଷ୍ୟ ଜ୍ଞାନ ବଢାଇବେ,
ଗାରିମା (୪) ରହିବ ନାହିଁ ।

ଘୋଟିବ ଘୋର ଅନ୍ଧାରି, ଘରଣୀ ହେବେ ଦୋଷ୍କରି,
ଘରେ ଘରେ କଳି ଘନିଷ୍ଠତା (୫) ଦଳି,
ଘମାଘୋଟ (୬) ଯୁଦ୍ଧ ହୋଇ । ୨ ।

ଉତ୍ପାତ ହେବ ବିଶେଷ, ଉଚ୍ଛୃଙ୍ଖଳ ହେବ ଦେଶ,
ଉତ୍କଳ (୭) ଭାବ ଉଦ୍‌ଭବ ହୋଇବ,
ଉଦଣ୍ଡପଣେକୁ ଧାୟି ।

ଙ୍ଖୀ ହେବେ ସର୍ବଜନ, ଚଷିବେ ଗୋଚରମାନ,
ଙ୍କର ସେବିବ ନ ରହିବ ଟେକ,
ଚକିତ ନ ହୁଅ ଙ୍ଖି । ୩ ।

ଛେଟଲୋକ ବଳିଆର, ଛବି (୮) କାଢ଼ିବେ ଅପାର,
ଛତରି (୯) ବଜାରି ଦେଶ ଯିବ ପୂରି,
ଛିଗ୍ଯାବାଗୀ ହେବ ଦେଶ ।

---

(୩) ବିଭିନ୍ନ ପ୍ରକାର ଆଭିଚାରିକ କର୍ମ ଅର୍ଥାତ୍ ମାରଣ, ମୋହନ, ବଶ୍ୟ, ଉଚ୍ଚାଟନ ଉଦ୍ଦେଶ୍ୟରେ ପ୍ରୟୋଗ କରିଯାଉଥିବା ମନ୍ତ୍ର 'ଗାରେଡ଼ି' ନାମରେ ଖ୍ୟାତ ହୋଇଥିଲେ ହେଁ, ଆଜିକାଲି କେବଳ ସର୍ପବିଷ ଝଡ଼ାଣ ମନ୍ତ୍ରକୁ ଗାରେଡ଼ି କୁହାଯାଇଛି ।

(୪) ଏଠାରେ 'ଗାରିମା' ଶବ୍ଦ ଗୌରବ ଅର୍ଥରେ ବ୍ୟବହାର ହୋଇଛି ।

(୫) 'ଘନିଷ୍ଠତା ଦଳି' ଅର୍ଥାତ୍ ସମ୍ଭାବ ଦୂର ହେବ ।

(୬) ଘମାଘୋଟ—ଘୋର, ଭୟଙ୍କର । ଏହା ଏକ ସାଂପ୍ରତିକ ପ୍ରୟୋଗ ।

(୭) ଉତ୍କଳ—ବିପଥଗାମୀ ।

(୮) 'ଛବି କାଢ଼ିବା' ଅର୍ଥାତ୍ ନୂଆପ୍ରକାର ଭାବ ପ୍ରଦର୍ଶନ କରିବା । ଏହା ଲୋକବ୍ୟବହାରରେ 'ଛଇ ବାହାର କରିବା' ରୂପେ ବ୍ୟବହୃତ ।

(୯) ଛତରି ବଜାରି ଶବ୍ଦ ଆଧୁନିକ ପ୍ରୟୋଗ । ନ'ଅଙ୍କ ଦୁର୍ଭିକ୍ଷ ସମୟରେ ଖ୍ରୀଷ୍ଟିୟାନ ଧର୍ମଯାଜକମାନେ ଅନ୍ନଛତ୍ର ଖୋଲିଥିଲେ । ସେଠାରେ ଭୋଜନ କରିଥିବା ବ୍ୟକ୍ତି ଛତଖିଆ, ଛତରି ରୂପେ ଲୋକମୁଖରେ ପରିଚିତ ହୋଇଥିଲେ । ସେହିପରି ଇଂରେଜୀ 'ବଜାର' ଶବ୍ଦରୁ 'ବଜାରି' ଶବ୍ଦର ଉତ୍ପତ୍ତି ।

ଜଗନ୍ନାଥଙ୍କ ଦେଉଳରୁ ଯେବେ ଖସିବ ପଥର,
ଜଗମୋହନରେ ଚତୁର୍ଦ୍ଧାମୂରତ;
ଯୋଗ ବର୍ଷ (୧୦) ହେବ ଏଗାର ମାସ । ୪ ।

ଝିଅ ନ କରିବେ ଦାନ, ଝଟକେ ଇଚ୍ଛାବରଣ,
ଝଷକେତନର (୧୧) ଝଲର (୧୨)-ଘାତରେ,
ଝିଙ୍ଗାସି (୧୩) ହୋଇବେ ଜନ ।

ଞଷ୍ଟୁର ବୁଦ୍ଧି ବହିବେ, ଞସ୍ତମକୁ ଆଗ ହେବେ (୧୪),
ନରମାନେ ସବୁ ବାନର ପରାୟେ,
ପର ମାଲ ବହିନେବେ । ୫ ।

ଟାଣ ନ ରଖିବେ କେହି, ଟଙ୍କାରେ ଟାଣ ହରାଇ,
ଟାଳିଦେବେ ପୂର୍ବ ପିତାର ବଚନ,
ଟାଣେ ହସୁଥିବେ ପତ୍ନୀକି ନେଇ (୧୫)

ଠାବ ନପାଇବେ କେହି, ଠିକରେ ଲହଡ଼ି ଆସିବ ଧାଇଁ,
ଠୂଳରେ ଆଶ୍ରୟ କରିବେ ନଷ୍ଟୟ,
ଠିକରେ ଦେଖିବ ଥାଇ । ୬ ।

ଡାକ କହୁଅଛୁ ଶୁଣ, ଡାହାଗିଲା (୧୬) ହେବେ ଜନ,
ଡକାଇତ କରି ଧନ ନେବେ ହରି,
ଡର ଭୟ ଛାଡ଼ି ଦେଇ ।

---

(୧୦) 'ଯାଗ ବର୍ଷ' ମୂଳପାଠ; କିନ୍ତୁ 'ଯୋଗ ବର୍ଷ ଏଗାର ମାସ'ର ଅର୍ଥ ବୋଧହୁଏ ସେ ବର୍ଷ ଦୁଇଟି ମଳମାସ ପଡ଼ିଥିଲା । ବର୍ଷ ମଧ୍ୟରେ ଦୁଇଟି ମଳମାସ ଅଶୁଭସୂଚକ । ବଡ଼ଦେଉଳରୁ ପଥର ଖସିଥିବାରୁ ଚତୁର୍ଦ୍ଧାମୂର୍ତ୍ତି ଜଗମୋହନରେ ବିଜେ କରିଥିଲେ ।

(୧୧) ଝଷକେତନ—କାମଦେବ, (୧୨) ଝଲରଘାତ—ପ୍ରପୀଡ଼ନ, (୧୩) ଝିଙ୍ଗାସି—ହନ୍ତସନ୍ତ, (୧୪) 'ଞସ୍ତମକୁ ଆଗହେବେ' ଅର୍ଥାତ୍ ନିୟମ ଉଲ୍ଲଙ୍ଘନ କରିବେ ।

(୧୫) ଏଠାରେ ଛନ୍ଦଭଙ୍ଗ ହେଉଛି । ତେଣୁ 'ଟାଣରେ ପତ୍ନୀକି ନେଇ' କିମ୍ବା 'ହସିବେ ପତ୍ନୀକି ନେଇ' ହେବା ବିଧେୟ ।

(୧୬) ଡାହାଗିଲା—ବୁଦ୍ଧି ବିବେକ ହରାଇ କାର୍ଯ୍ୟ କରିବା ।

ତାଲେ ହାତଗିରି ଧରି, ସନ୍ତେ ଡ଼ୋକବେ ସୁରି,
ଡେଙ୍ଗା ଚଡାମାନ (୧୭) କାଟିବେ ଅଜ୍ଞାନେ,
ଛଳଛଳ ହେବ ମହୀ । ୭ ।

ଅକାଲେ ବରଷା ହେବ, ଅହ୍ନେ ନଦୀ ବଢ଼ିବ,
ଅପାଳକ ହୋଇ ନାଶଯିବ ମହୀ,
କ୍ଷୀରହୀନ ହେବେ ଗାଈ ।
ଭୂନ ହେବେ ସଜ୍ଜନ, ଚଳଖିବା (୧୮) ହେବ ଲୀନ,
ଚୋଡ଼ାଣିଆମାନେ (୧୯) ତ୍ରିଦଶ (୨୦) ଆସନେ,
(ତଲେ) ରହିବେ ବିବେକୀ ଯାଇ । ୮ ।

ଆମାମାନେ (୨୧) ଯିବେ ଖସି, ଅଥାମୀ (୨୨) ବସିବେ ଆସି,
ପୋଇଲୀ ଭାରିଯା ପାଉଥିବେ ପୂଜା,
ଘରଣୀ ରହିବେ କାହିଁ ।
ଦେବତା ଉଠେ ଲୁଚବେ, ଦାରୁ (୨୩) ବୃକ୍ଷ ଯେ ଲୁଚବେ,
ଦେଖିବାର ଜନ ଦେଖିବଟି ଜାଣ,
ଦେବକୂଟ ମାୟା ଏହି । ୯ ।

---

(୧୭) 'ଡେଙ୍ଗା ଚଡା'—ଖୁବ୍ ସମ୍ଭବତଃ ଭକ୍ତକବି ବାଲୁଗାଁ ଦାସଙ୍କ ସମସ୍ତବେଳକୁ ଗୌଡ଼ୀୟ ପ୍ରଚାରକଙ୍କ ପ୍ରଭାବରେ 'ଚୈତନ ଚଡା' କାଟି କେତେକ ତଥାକଥିତ ସାଧୁ ଲୋକମାନଙ୍କୁ ଭଣ୍ଡିବା ଆରମ୍ଭ କରଦେଲେଣି । ଅନ୍ୟଥା କବି ଡେଙ୍ଗାଚଡା ଅର୍ଥାତ୍ ଗୌଡ଼ୀୟ ସନ୍ନ୍ୟାସୀଙ୍କ ପରି ଚଡା କାଟିବାକୁ ଏତେ ସମାଲୋଚନା କରନଥାନ୍ତେ । ବିଶେଷତଃ ବାଲୁଗାଁ ଦାସ ଅତିବଡ଼ ସମ୍ପ୍ରଦାୟର ହୋଇଥିବାରୁ ପରବର୍ତ୍ତୀ କାଳୀନ ଗୌଡ଼ୀୟ ଚଡା ପ୍ରତି ତାଙ୍କ ମନରେ ଦ୍ୱିଧାଭାବ ଥିଲ ।
(୧୮) ଚଳଖିବା—ପରୀକ୍ଷା କରିବା ଅର୍ଥାତ୍ ବିବେକ ସହିତ କାର୍ଯ୍ୟ କରିବା ଅର୍ଥରେ ପ୍ରୟୋଗ କରଯାଇଛି ।
(୧୯) ଚୋଡ଼ାଣିଆ—ମାଗିଖିଆ ଅର୍ଥରେ ପ୍ରୟୋଗ ହୋଇଛି ।
(୨୦) ତ୍ରିଦଶ—ଦେବତା, ଏଠାରେ ଉଚ୍ଚ ଆସନରେ ବସିବା ।
(୨୧) ଆମାମାନେ—ସ୍ଥାନାପନ୍ନ ବ୍ୟକ୍ତି, ସମ୍ମାନିତ ବ୍ୟକ୍ତି, ଅର୍ଥାତ୍ ସ୍ଥାୟୀ ବାସିନ୍ଦା ।
(୨୨) ଅଥାମୀ—ବାହାରୁ ଆସିଥିବା ବ୍ୟକ୍ତି, ଅର୍ଥାତ୍ ନୀଚଲୋକ ।
(୨୩) ଦାରୁବୃକ୍ଷ—ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ଗଠିତ ହେବା ଲାଗି ନିମ୍ବଗଛ ।

ଧର୍ମ ନ ମାନିବେ କେହି, ଧାର୍ମିକ ରହିବେ ନାହିଁ,
ଧରମ ଗ୍ରନ୍ଥିବ ଧରଣୀ କମ୍ପିବ
ଧର୍ମଧ୍ୱଜା (୨୪) ଯିବ ଲଇଁ ।

ନ୍ୟାୟପଥ ନଷ୍ଟ ହେବ, ନ୍ୟାୟଧର୍ମ ବୁଡ଼ିଯିବ,
ନ ମାନିବେ କେହି ଶାଶୁ ଶ୍ୱଶୁରଙ୍କୁ
ଯୌବନ ବଳିବେ ସେହି । ୧୦ ।

ପାପେ କଳିଯୁଗ ଶେଷ, ପଶି କଲି ସବୁ ଧ୍ୱଂସ,
ପର ମାଲ ପର ନେଇ ଯିବେ ଘର,
ପିତା ପୁତ୍ର ମେଳ ନାହିଁ ।

ଫୁଲ ଫୁଟିଯିବ ଝଡ଼ି, ଫଳ ଫଳିବ ଅଗାଡ଼ି,
ଫନ୍ଦାକଲି (୨୫) ଜନ ନଟାଇ ବାହନ,
ପଳାଇବେ ଗ୍ରାମ ଛାଡ଼ି । ୧୧ ।

ବଡ଼ ବଡ଼ ବନ୍ଧମାନ (୨୬), ବଢ଼ିରେ ହୋଇବ ପୂର୍ଣ୍ଣ,
ବହିବ ବତାସ ବଜ୍ର ହେବ ନାଶ,
ବସୁଧା ଯିବ ଘୁମାଇ (୨୭)

ଭବରଖ ଭବରଖ (୨୮), ଭେଲକା (୨୯) ନହୁଅ ଏକ,
ଭକ୍ତ ଯେଉଁ ଜନ ଭୟର କାରଣ (୩୦),
ଭୟ ତୋ ଯିବ ପଳାଇ ।୧୨।

ମହାକଳି କାଳ ଏହି, ମଣ୍ଡି ନ ପାରିବ ସହି,
ମହାଦୁଷ୍ଟଗଣେ ମଣ୍ଡି ହେବ ପୂର୍ଣ୍ଣ,
ମହନ୍ତ ରହିବ ନାହିଁ ।

---

(୨୪) ଧର୍ମଧ୍ୱଜା—ପତିତପାବନବାନା, ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରର ପତାକା ।
(୨୫) ଫନ୍ଦା—ଜୀବିକା ନିର୍ବାହ ଉଦ୍ଦେଶ୍ୟରେ ଯାନ୍ତ୍ରିକ ଯାନ ।
(୨୬) ବନ୍ଧ—ପୁଷ୍କରଣୀ । (୨୭) ଘୁମାଇ—ପୃଥିବୀର ସାଧୁସମାଜ ନୀରବ ରହିବେ ।
(୨୮) ମୂଳପାଠରେ କେବଳ ଗୋଟିଏ 'ଭବରଖ' ପଦ ରହିଛି । ତା'ଫଳରେ ଛନ୍ଦଭଙ୍ଗ ଦୋଷ ହେଉଥିବାରୁ ଆଉ ଗୋଟିଏ 'ଭବରଖ' ପ୍ରୟୋଗ କରାଯାଇଛି ।
(୨୯) ଭେଲକା—ଆଶ୍ଚର୍ଯ୍ୟ ।
(୩୦) ଭକ୍ତଜନମାନେ ଅସାଧୁ ଲୋକଙ୍କ ଭୟରେ ଭୟ ପାଇବେ, ଏହି ଅର୍ଥରେ ପାଦଟି ପ୍ରୟୋଗ କରାଯାଇଛି ।

ଜାଡ଼ (୩୧) ହୋଇଯିବ ମ୍ଳାନ, ଯନ୍ତ୍ରଣା ଭୋଗିବେ ଜନ,
କାଳ ଅକାଳ ଯେ ଏକଯ ହୋଇବେ,
ଛାଡ଼ ତ ରହିବ ନାହିଁ । ୧୩ ।
ରାଜା ବିଦେଶରୁ ଆସି, ରାଜ୍ୟ ମଧ୍ୟେ ଥିବେ ବସି,
ଦୃଷ୍ଟିଙ୍କୁ ଦଣ୍ଡିବ ରାଜ୍ୟ ଛାଡ଼ି ଯିବ,
ରାଜ୍ୟେ ରାଜ୍ୟେ ଯୁଦ୍ଧ ହୋଇ (୩୨) ।
ଲବେ ଲଞ୍ଜା (୩୩) ଯେ ପଡ଼ିବ, ଲବଣଜଳ ମାଡ଼ିବ,
ଲକ୍ଷ ଲକ୍ଷ ଜନ ଲଭିବେ ମରଣ,
ଲଣ୍ଡଲଣ୍ଡ (୩୪) ହେବେ ଯାଇ । ୧୪ ।
ବାଡ଼ି (୩୫) ବସନ୍ତକୁ ରାଇ, ବିରଜା ସଙ୍ଗତେ ଥାଇ,
ବିଜୟା ଚଣ୍ଡିକା ବାସେଲୀ ଅମ୍ବିକା,
ବାଛି ବାଛି ଯିବେ ଖାଇ ।
ଶୀଘ୍ରେ ଆସିବେ ମୋହନ (୩୬), ଶତ୍ରୁ କରିଦେବେ ମ୍ଳାନ,
ସକଳ ବେଦନା କରୁଥିବେ ଯେବା,
ଶେଷେ (୩୭) ମରିବେ ଶିକାର ହୋଇ । ୧୫ ।
ସତ୍ଯ ହୋଇବେ ଜନମ, ସମସ୍ୟାର ସମାଧାନ,
ସାରଦେଲ ମାନେ ଶେଷ ହେବା ରାତ୍ରେ,
ସୁଚନା ରଖିବେ ସେହି ।

---

(୩୧) 'ଯ' ସ୍ଥାନରେ 'ଜ' ପ୍ରୟୋଗ କରିବା ପ୍ରାଚୀନ ଚଉତିଶା ନିୟମରେ ଦେଖାଯାଏ ।

(୩୨) ଏଠାରେ ମୋଗଲ ଓ ମରହଟ୍ଟାମାନଙ୍କ ଆଗମନକୁ ଲକ୍ଷ୍ୟରେ ରଖି କୁହାଯାଇଛି । ସେ ସମୟରେ ରାଜ୍ୟ ରାଜ୍ୟ ମଧ୍ୟରେ ଘୋର ଯୁଦ୍ଧ ସଂଗଠିତ ହୋଇ ଦେଶରେ ଅରାଜକତା ବ୍ୟାପିଥିଲା ।

(୩୩) 'ଲଞ୍ଜା' ଅର୍ଥାତ୍ ଲଞ୍ଜାତାରା, ଧୂମକେତୁ । ଲଞ୍ଜାତାରା ଝସିବା ଅଶୁଭ ଚିହ୍ନର ଦ୍ୟୋତକ ।

(୩୪) ବଣ୍ଡବଣ୍ଡ ମୂଳପାଠ, କିନ୍ତୁ 'ଲଣ୍ଡଲଣ୍ଡ' ଅର୍ଥାତ୍ ହଣାମରା ବ୍ୟାପିଯିବା ଅର୍ଥରେ ଏଠାରେ ପ୍ରୟୋଗ କରାଯାଇଛି ।

(୩୫) ବାଡ଼ି = ହଇଜା ।

(୩୬) ମୋହନ ଅର୍ଥାତ୍ 'ମହନାମୋଗଲ' । କବି 'ଆଗତ ଭବିଷ୍ୟ'ରେ 'ମହନାମୋଗଲ' ପ୍ରୟୋଗ କରିଛନ୍ତି । ପୃଷ୍ଠା ୮୪ ଦେଖନ୍ତୁ ।

(୩୭) ଏଠାରେ ମଧ୍ୟ ଛନ୍ଦଭଙ୍ଗ ହେଉଛି । ଏଠାରେ 'ଶେଷେ' ପଦଟିକୁ ବାଦ୍ ଦେଲେ ଚଳିବ ।

ଶ୍ରୀକ୍ଷେତ୍ର ଭୁବନେଶ୍ୱର, ସଂସାର ମଧ୍ୟରେ ସାର
ସକଳ ସାଧକ ପଣ୍ଡିତ ବିବେକ,
ପରୀକ୍ଷାକୁ ଥିବେ ରହି (୩୮) । ୧୬ ।
ହସ୍ତି (୩୯) ଉପରେ ବାହାରି, ହରି (୪୦) କଲକି ରୂପକୁ ଧରି,
ହରିବେ କଷଣ ହାଣି ଦୁଷ୍ଟ ଜନ,
ହାତେ କାଳଚଣ୍ଡ (୪୧) ନେଇ ।
କ୍ଷେତ୍ରବର ଯଜ୍ଞସ୍ଥାନ, କ୍ଷେତ୍ର ମଧ୍ୟରେ ଉତ୍ତମ,
କ୍ଷମାକର ଦୋଷ କ୍ଷମାଧରକୋଷ (୪୨),
ବାଲିଗାଁ ଦାସ ଲେଖକ (୪୩) । ୧୭ ।

□□□

---

(୩୮) ପୁଣ୍ୟଧାମରୂପେ ପରିଚିତ ପୁରୀ ଓ ଭୁବନେଶ୍ୱରର ଭକ୍ତମାନେ ଧର୍ମପରୀକ୍ଷା ଲାଗି ପ୍ରସ୍ତୁତ ହୋଇ ରହିଥିବାର ସୂଚନା କବି ଦେଇଛନ୍ତି ।

(୩୯) 'ହାସ୍ତି ରୂପରେ ବାହାରି' ମୂଳପାଠ । କଳିଯୁଗରେ ଅନନ୍ତ କେଶରୀ କଲକିସ୍ୱରୂପୀ ଶ୍ରୀଜଗନ୍ନାଥ ଘୋଡ଼ା ଉପରେ ବସି, ମ୍ଳେଚ୍ଛ ସଂହାର କରିଥିବା ବୃତ୍ତାନ୍ତ କବି ବାଲିଗାଁ ଦାସ 'ଅଗତ ଭବିଷ୍ୟ' ପୁସ୍ତକର ପଞ୍ଚମ ଅଧ୍ୟାୟରେ ବର୍ଣ୍ଣନା କରିଛନ୍ତି । ଦେଖନ୍ତୁ ପୃଷ୍ଠା ୯୧ ।

(୪୦) ଏଠାରେ ମଧ୍ୟ ଛନ୍ଦଭଙ୍ଗ ହେଉଛି । ତେଣୁ 'ହରି କଲ୍କିରୂପ ଧରି' ପାଠ ହେଲେ ଛନ୍ଦ ବ୍ୟତିକ୍ରମ ହେବନାହିଁ ।

(୪୧) କବି ଦାସିଆ ସ୍ୱରଚିତ 'ଆଗତ ଭବିଷ୍ୟ' ପୁସ୍ତକର ପଞ୍ଚମ ଅଧ୍ୟାୟ (ପୃ. ୯୧) ରେ କଲ୍କି ଅବତାର ହାତରେ କୁଠାର ଧାରଣ କରି ଅସୁର ଅର୍ଥାତ୍ ଦୁଷ୍ଟମାନଙ୍କୁ ସଂହାର କରିଥିବାର ବର୍ଣ୍ଣନା କରିଛନ୍ତି ।

(୪୨) କ୍ଷମାଧରକୋଷ—କ୍ଷମାର ମୂର୍ତ୍ତି, ଅର୍ଥାତ୍ କ୍ଷମାସାଗର ଶ୍ରୀଜଗନ୍ନାଥ ।

(୪୩) ଲୋକମୁଖରେ ଚଉତିଶାଟି 'ମାଳିକା ଚଉତିଶା' ନାମରେ ପରିଚିତ । ଚଉତିଶାର ଭାଷା ଅପେକ୍ଷାକୃତ ଆଧୁନିକ । ହୁଏତ ନକଲକାରମାନଙ୍କଦ୍ୱାରା ଏପରି ହୋଇ ଥାଇପାରେ; କିନ୍ତୁ ବିଷୟବସ୍ତୁର ବର୍ଣ୍ଣନା କବିଙ୍କ ରଚିତ 'ଆଗତ ଭବିଷ୍ୟ' ପୁସ୍ତକର ଅନୁରୂପ ।